ପ୍ରକାଶକ—
ଶ୍ରୀମତୀ ସୁଲୋଚନା ପଟ୍ଟନାୟକ
ଦୁଦୁରକୋଟ, ହୁଦୋଳ
ପ୍ରଥମ ମୁଦ୍ରଣ, ୧୯୫୭

ମୁଦ୍ରଣ— ଶ୍ରୀ ରାମଚନ୍ଦ୍ର ଦାସ
ନବଭାରତ ପ୍ରେସ,
କଟକ

ପ୍ରଚ୍ଛଦପଟ— ମନମୋହନ ପ୍ରେସ,
କଟକ

ଏକଟଙ୍କା ଛଅଣା

# ପଦେ

ଗଳ୍ପ ବହିଟିର ନାଁ "ଅଂଶୁପାର ମାଝୀ" । ସାତଟି ଗଳ୍ପ ମୁ ଏଥିରେ ଏକତ୍ର କରିଛି ।

ଭଲ ଭଲ ଶ୍ରୀ ସନ୍ନିବେଶରେ 'ତିଲୋତ୍ତମା'ର ସୌଷ୍ଠବ ମୁ ମୋର ସଙ୍କଳନରେ ଦାବି କରୁନାହିଁ । ମାତ୍ର 'ସପ୍ତ ଋଷି'ର ସମାବେଶ ପରି ସମଗ୍ରତା ( totality ) କେବଳ ମୋର ଲକ୍ଷ୍ୟ ନୁହେଁ । ବିଭିନ୍ନତା ( variety )ର ଅନୁପ୍ରକାଶରେ ମୁଁ ସଚେତ ।

"ଅଂଶୁପାର ମାଝୀ" ଗୋଟିଏ······ସମାହାର ସାତୋଟି ଗଳ୍ପ ମଧ୍ୟ ।

ଆଠଗଡ଼

ଶଶି ପଟ୍ଟନାୟକ
୨୦।୧୧।୫୭

# ସୂଚୀ



---

# ପରିଚୟ

ଗ୍ରୀକ-କଥାରେ ଆଟଲାଣ୍ଟା ଅଟେ ନାରୀ, ତାପରେ ପ୍ରତି-ଯୋଗିତାରେ ପୁରୁଷାୟିତ କିନ୍ତୁ ପରେ ପରେ 'ସୁନାର ଆପଲ୍' ଦେଖି ସେ ଦୃଷ୍ଟି ଫେରାଇଲା···ତା ଅଭିଯାନର ଏକ ବାହୁଡ଼ାଯାତ୍ରା-- ପ୍ରଥମାଂଶ ଗଦ୍ୟ କବିତା ମାତ୍ର 'ଆଟଲାଣ୍ଟାର' ଅନୁକୂଳ ଗଳ୍ପ-ଶିଳ୍ପର ସ୍ୱରୂପ—ସେଥିରେ ଅଛି ମନ, ମନନ ଓ ମନୋବିକଳନ ।

ଅତୀତରେ ଆମ ଗୃହକଳା ଥିଲା ଖୁବ୍ ଋଦ୍ଧିମନ୍ତ ଠିକ୍ ଆମ ଦେଶର ପୁଷ୍ପିତ ଓ ପଲ୍ଲବିତ କାରୁକଳା ପରି । ମାତ୍ର ଯୁଗ-ପ୍ରଭାବ ଆଜି ସାହିତ୍ୟରେ ନାନା ବିପ୍ଳବ ସୃଷ୍ଟି କରିଛି, ଓଡ଼ିଆରେ ତାର ପୁଷ୍କଳ ପ୍ରକାଶ ହୋଇ ପାରିନି । ତଥାପି କାବ୍ୟ, କବିତା, ଉପନ୍ୟାସ, ନାଟକ ତୁଳନାରେ ଆମ ଦେଶରେ କଥାଶିଳ୍ପର ମାଧ୍ୟମ ଆଶାଜନକ ପରି ମନେ ହୁଏ । ସେ ଦିଗରେ ଅନେକ ନୂତନ ଓ ତରୁଣ ଆଗନ୍ତୁକମାନଙ୍କ ଦାନ ଆଶା ଓ ଆଶ୍ୱାସନା ଆଣୁଅଛି । ଶ୍ରୀମାନ୍ ଶଶି ପଟ୍ଟନାୟକଙ୍କ ସାକ୍ଷାତ ମିଳେ ଆଜି ସେଇ ବିଭବରେ ।

ଦେଶର ବାଣୀ-କ୍ଷେତ୍ରରେ ଶଶିଭୂଷଣ ପଟ୍ଟନାୟକ ଅପରିଚିତ ନୁହନ୍ତି । ସେ ଏକଦା ପ୍ରକାଶିତ 'ଶତାବ୍ଦୀ'ର ସଂପାଦକ ଭାବରେ ପରିଚିତ, କେତେକ ଗଳ୍ପ, କବିତା ଲେଖିଚନ୍ତି । ମାତ୍ର 'ଅଂଶୁପାର ମାଝୀ'ର ଲେଖକ ଆଉ ଏକ ଶଶିଭୂଷଣ । ଭ୍ରମର ନିରାକରଣ ପାଇଁ ସେ ନିଜକୁ ପ୍ରକାଶ କରୁଛନ୍ତି ଶଶି ପଟ୍ଟନାୟକ ନାମରେ ।

"ଅଂଶୁପାର ମାଝୀ" ଶଶି ପଟ୍ଟନାୟକଙ୍କର ଖଣ୍ଡିଏ ଗଳ୍ପ ସଙ୍କଳନ—ସାତୋଟି ଗଳ୍ପର ସମାହାର । ମଣିଷର ଆଧୁନିକ ଜୀବନ ଆଜି ବହୁ ଦିଗରେ ବଂଚିତ ହୋଇ ବଂଚି ରହୁଚି ଦୁଇଟି ଦିଗରେ । ଗୋଟିଏ ଭାତ ରୋଟିର ଦିଗ—ଦେହକୁ ବଂଚାଇବା··· 'ଶରୀରମାଦ୍ୟଂ ଖଳୁ ଧର୍ମସାଧନମ୍' ହୋଇଗଲେ ଆଉ ଦିଗଟି ଦେହର ଏକ ସ୍ୱାଭାବିକ କ୍ଷୁଧା—ଅଦେହ । ନୂତନ ଲେଖକଙ୍କର ଶିଳ୍ପମାନସ "ଅଂଶୁପାର ମାଝୀ"ରେ ଏଇ ଭାବରେ ବିଚ୍ଛୁରିତ···

ଗଳ୍ପ ସଂଚୟନରେ 'ଅଂଶୁପାର ମାଝୀ' ପ୍ରଥମ ଗଳ୍ପ ।

ଲେଖକଙ୍କର ଅଂଶୁପା-ଅନୁଭୂତ ସ୍ପର୍ଶ, ସରଣ୍ଡା ପାହାଡ଼ର ପରିବେଶ, ଅଂଶୁପାର ଚଳଚଞ୍ଚଳ ନୀଳ ବାରି ପାଠକ ଆଗରେ ସ୍ୱପ୍ନାୟମାନ ଶ୍ରୀ ଫୁଟାଏ । ମାତ୍ର ନୀଳହ୍ରଦର ଯାଯାବର 'ମାଝୀ' ମନରେ ଗଭୀର ରେଖାପାତ କରେ—ତାର ସେଇ ଜୀବନ--ଯାହା ଆଜି ଏଇ ଗଣଶାସନର ହାକିମଙ୍କ ପଶୀଶିକାର ସାଙ୍ଗରେ ଆଉ ଏକ ଜୀଅନ୍ତା ଶିକାର । ତଥାପି ବେଠି, ଭେଟି—ପିତ୍ତଡାଳ ମନୋବୃତ୍ତିର ଏକ ଦୁଃସହ ଅବଶେଷ ।

"ଅଂଶୁମାର ମାଟ୍ଟି" ଏ ଫରସୁନର ଶ୍ରେଷ୍ଠ ସଫଳ ଶିଳ୍ପ ।

"ଏକା ନାଅରେ"—ଦେଖିବାକୁ ମିଳେ ମନଗହ୍ୱରର ଏକ ଉଲଙ୍ଗ ସତ୍ୟ·········

"ଇନ୍ଦୁ—ବୁଝିଲତ, ତଥାପି କଂକରେ ଶୁଣୁଥିଲି ତୁ କୁଆଡ଼େ ଦ୍ୱାର ଛୁଇଁ ଚାଲିଗଲୁ·········"

ପ୍ରିୟା କଥା ଛଡ଼େଇ ନେଇ କହୁଲ—"ବାସ୍ତବିକରେ କହୁଛି ଏଇଆ ହିଁ । ଯାହା କହ ତୁ ଠିକ୍ ଏ ଭୁଲ୍, ଶୁଣିଚୁ ଇନ୍ଦୁ । କଥାଟା ପୁରା ମିଛ ନୁହେଁ, ତେବେ ବଡ଼ କଥାଟା ତ ମୋଟେ ନୁହେଁ···"

ପ୍ରିୟା ପରି ମୋ ମନରେ ଏକ ସାମାନ୍ୟରକମ କଥା ସଜାଗ ହୁଏ···ଥରେ ଜଣେ ଲେଖିକା ମୋତେ ପଚାରିଥିଲେ—"ମୁଁ ଖଣ୍ଡିଏ ଉପନ୍ୟାସ ଲେଖିବାକୁ ଚାହୁଁଛି······ଅବଶ୍ୟ ପୁରୁଷ-ଚରିତ୍ର-ହୀନ ଉପନ୍ୟାସ ।"

ପରିହାସ କରି ମୁଁ କହୁଲି—ଚରିତ୍ରହୀନ ପୁରୁଷଙ୍କ ଉପରେ ଉପନ୍ୟାସ ?

ସେ କହୁଲେ—ଆପଣ ତ ସେଇପରି କହିବେ !

—ନାରୀ-ଚରିତ୍ର-ହୀନ ନାଟକ ଭଲ ତ ? ପୁରୁଷ-ଚରିତ୍ର-ହୀନ ଉପନ୍ୟାସ

ହଁ—

—ଜୀବନରେ କୌଣସି ଅପବାଦ ସୃଷ୍ଟି ନ କରି ତମେ ଉତ୍ତର ଛତିଶରେ ପାଦ ଦେଲଣି···ତୁମେ କୁମାରୀ ହେଇ ରହୁଚ···ମାତ୍ର ମୋର ଆଶଙ୍କା ପରେ ପରେ ତୁମକୁ ଆଉ ଖଣ୍ଡିଏ ଉପନ୍ୟାସ ଲେଖିବାକୁ ପଡ଼ିବ ।

—ସେ ପୁଣି କ ଉପନ୍ୟାସ ?

"ମୁଁ କାହିଁକ ଲେଖିଲି ?" ସେଇଟା ବଡ଼ ସ୍ୱାଭାବକ । ଚଯ୍ୟସର ବଷ ତାଙ୍କୁ ତ ବିଶ୍ୱାସ ନାହିଁ । ପୁରୁଷ-ଚରତ୍ର-ପ୍ରଧାନ ଉପନ୍ୟାସଟି ଲେଖିସାରିଲା ପରେ ତୁମର ଟାଣ ଭାଙ୍ଗି ପଡ଼ିବ । ତୁମେ ପ୍ରେମରେ ପଡ଼ିବ,ନାରୀ ସାଙ୍ଗରେ ନୁହେଁ,ପୁରୁଷ ସାଙ୍ଗରେ —

ସେ ହଠାତ୍ କହି ଉଠିଲେ—ମୁଁ ଆଉ ଲେଖିବ ନାହିଁ ।

ନାରୀ ମନର ସେଇ ନିଭୃତ ସତ୍ୟ "ଏକାନାଆରେ" ଯେଉଁ ପ୍ରିୟାକୁ ଆମେ ଦେଖିଚୁ ତାହା ପକ୍ଷରେ ସତ୍ୟ ହୋଇ ପାରେ ମାତ୍ର ଲେଖିକାଙ୍କ କଥା ଭଳି ନିଭୃତ ସହଜ ସତ୍ୟ ନୁହେଁ ।

ମାତ୍ର ଇନ୍ଦୁ ଓ ପ୍ରିୟାର ନିର୍ବିକାର ସଂଳାପ ଗଭୀର ମନର ପ୍ରତିଧ୍ୱନି···ନାରୀହୃଦୟର ଅନୁରଣନ ।

"ବାବୁଲର ବାବୁ" ରେ 'ବାବୁଲ' ଓ 'ବାବୁ' ଦୁଇଟି ଚରତ୍ର—ବାହାରେ ବାବୁଲର କରୁଣଚିତ୍ର ମନରେ ସଂବେଦନ-ଶୀଳତା ଆଣେ ମାତ୍ର 'ବାବୁ'ର ଚିର ପ୍ରାଣର ତନ୍ତ୍ରୀକୁ ଅନୁକମ୍ପିତ କରେ । ଯେଉଁ ଝଡ଼, ଯେଉଁ ଦ୍ୱନ୍ଦ୍ୱ,ଯେଉଁ ସ୍ପନ୍ଦ, ଯେଉଁ ଅଭିଯାନ, ଯେଉଁ ଅଭିସାର 'ବାବୁ'ର ପ୍ରାଣକୁ ମୁଗ୍ଧ ଲୁବ୍ଧ ଓ କ୍ଷୁବ୍ଧ କରଚି ତା ଲକ୍ଷ୍ୟ କରିବାର କଥା—ଯିଏ 'ବାବୁଲ'କୁ ମାଡ଼ ଦେଇ 'ବାବୁଲ' ଆଖିରେ ଲୁହ ଆଣୁଥିଲା ପୁଣି ସିଏ 'ବାବୁଲ' ପାଇଁ ନିଜେ ଲୁହ ଦେଇଚି । ସେଇ ଦୈନ୍ୟ 'ବାବୁଲ'ର ଦୈନ୍ୟଠାରୁ ଅଧିକ ଦୁଃସହ···ଗଳ୍ପଟି ଉଭୟ ଦଗରେ ପ୍ରାଣବନ୍ତ ।

'ମନ ଯାହା ଭାବୁଥାଏ' ତାହା ସହଜରେ ବାହାରେ ଜାଣି ହୁଏ ନାହିଁ, 'ମୁନ୍ଧୋ' ମନେ ମନେ ଯାହା ଭାବୁଥିଲା କେହି ଜାଣି

ପାରୁ ନ ଥିଲେ । ହଠାତ୍ ସେ ଧନେ ତାର ଭାଇ ବନ୍ଧୁଙ୍କୁ ବର୍ଜିତ କରି ଚାଲି ଯାଇଛି ତା ପ୍ରିୟତମ ପାଖକୁ । 'ଯଯାତି' ଯା ବି ଭାବୁଥିଲା ତା'ର ସତ ହେଲା । ତେବେ 'ମୁଗ୍ଧାର' କଳାତ୍ମକତାଠାରୁ 'ଯଯାତି'ର ଅସହାୟତା ଗଳ୍ପଟିରେ ମୋହ ସୃଷ୍ଟି କରି ପାରିଛି ।

'କୁଳଶୋଭା'ରେ ବିଜ୍ଞାନ୍ ଓ ମନୋବିଜ୍ଞାନର ଦ୍ୱନ୍ଦ୍ୱ ପ୍ରୟୋଜନର ଅପ୍ରୟୋଜନ୍ କରିବାକୁ ମଣିଷ ଅକ୍ଷମ ହୋଇ ପ୍ରକୃତି ଉପରେ ହସ୍ତକ୍ଷେପ କରୁଛି । ସେଇଥିପାଇଁ ଜନ୍ମ-ନିୟନ୍ତ୍ରଣ ଭ୍ରୂଣ-ହତ୍ୟାର ଆଶ୍ରୟ ନେଉଛି । 'ଅଧର' ସେଥିରୁ ମୁକ୍ତ ହୋଇ ପାରୁନି ମାତ୍ର 'ସୁପ୍ରା'ର ମାତୃତ୍ୱ ଅଧରକୁ ତହିଁରୁ କ୍ଷାନ୍ତ କରିଛି, ଯେଉଁ ଭ୍ରୂଣ ପାଇଁ ଅଧର ନିର୍ମମ ହୋଇଛି, ପାଷାଣ ହୋଇଛି ସେଇ ବର୍ଜିତ୍ତ ସନ୍ତାନ ପାଇଁ ସେ ଢାଳିଛି ଅଜସ୍ର ଲୁହ । ବିଜ୍ଞାନର ଉପକାରକୁ ଅସ୍ୱୀକାର କରି ମନୋବିଜ୍ଞାନର ଉପଚାର ଗଳ୍ପଟିରେ ପ୍ରତିଷ୍ଠା ଲାଭ କରିଛି ।

'ସ୍ୱାଧୀନ ଭାରତ ରେସ୍ତୋରାଁ'ର କଥା-ବସ୍ତୁ ନୂତନ ନୁହେଁ, ଗତାନୁଗତିକ-ବହୁ ଅନ୍ତର୍ଜାତିକ ଗଳ୍ପ ଉପନ୍ୟାସରେ ଏହାର ଉପାଦାନ ସୁଲଭ । ତେବେ ପୃଥିବୀରେ ଏ ଅପ୍ରିୟ ସତ୍ୟ ପାଇଁ ସ୍ଥାନ ଅଛି, ସମ୍ମାନ ଅଛି । 'ବେଲ୍', ବେଲର ଝିଅ 'ରେଖା' ଏ ଗଳ୍ପରେ ସବୁ ଶାସ୍ତିର ଶରବ୍ୟ, ମାତ୍ର କାପେଟ୍ନ ଗ୍ରେ ଧୂର୍ତ୍ତ, ଯିଏ ପ୍ରକୃତରେ ଶରବ୍ୟ ହେବାର କଥା ତାର ପରିଣତି ନାହିଁ । ଗଳ୍ପଟି ଚିତ୍ର ନୁହେଁ— ଫଟୋ ।

'ମୁକ୍ତାବଳି' ଗଳ୍ପଟି ଏ ସଞ୍ଚୟନରେ ଟିକିଏ ବ୍ୟତିକ୍ରମ । ସହରର ପରିବେଶରୁ ମୁକ୍ତ । ଚନ୍ଦନ କଥା, ଚନ୍ଦନ ଭାଇ ମାଟିରେ

ରହୁଛି···ରକ୍ଷିତା ନେଇ ପ୍ରବାସ-ଜୀବନ କଟେଇଛି । ଘରେ ସେବା···ସ୍ୱାମୀ ଆସିଲେ ଆନନ୍ଦ ଉତ୍ସବରେ ବିଭୋର ହେଉଛି—ଛୁଟିପାଉ ନାହିଁ । ଠିକ୍ ସେଇପରି 'ମୁକୁତା' 'ନବୀନା'ର ସହଜ ସରଳ ଜୀବନ ଉପଲବ୍ଧି କରିବାକୁ ଅକ୍ଷମ—ତାକୁ ଉଦାସୀନତା ମନେ କରି ସେ ଦୁଃଖରେ ରହୁଛି । କିନ୍ତୁ ସେ ଭୁଲ୍ ବେଶୀ ଦିନ ରହୁ ନାହିଁ । 'ମୁକ୍ତାବଳୀ' ହୋଇଛି । ମୁକୁତା ଶେଷରେ ବୁଝିପାରୁଛି ତା ସ୍ୱାମୀର ଗଭୀର ପ୍ରେମ···ଜୀବନ ପାଇଁ, ଜୀବିକା ପାଇଁ ।

ଆଗନ୍ତୁକ ଆମ ଗଳ୍ପ ସାହିତ୍ୟରେ ନୂତନ । ନୂତନତାରେ ତ୍ରୁଟିର ଆଶଙ୍କା ଅଛି, ସୃଷ୍ଟିର ସ୍ୱୀକୃତି ବି ଅଛି । ମୁଁ ତ୍ରୁଟିର ଦିଗ ଦେଖି ନାହିଁ ଯାହା ଦେଖିଛି, ତାହା ମୋତେ କେବଳ ଆଶା ଓ ଆନନ୍ଦ ଦେଉଛି ତା ନୁହେଁ ଓଡ଼ିଶାର ପାଠକ ପାଠିକା ସମସ୍ତଙ୍କୁ ଦେବ ।

ଶ୍ରୀମାନ୍ ଶଶି ପଟ୍ଟନାୟକଙ୍କୁ ମୁଁ ଗଳ୍ପ-ସାହିତ୍ୟକୁ ସ୍ୱାଗତ କରୁଛି ।

କଟକ                                        ରାଧାମୋହନ ଗଡ଼ନାୟକ

୨୧।୧୧।୫୭

ପାଞ୍ଚଟି ମିନଟ ମୋଟେ ବ୍ୟବଧାନ···

ଅବଷ୍ଟ ଚିତ୍ତରେ କଳ୍ପନା କରି ଯାଉଥିଲି—ଅଶ୍ରୁମୋଚନ କରୁଛି ବସୁନ୍ଧରା । ଅବିଳମ୍ବ ତରଙ୍ଗ ଯେମିତି ଅତି ଅଯତ୍ନରେ ଅଶ୍ରୁର ଛିଟା ତଟଭୂମି ଉପରକୁ ଛାଟି ଦେଉଚି···ଉଦ୍ଭାସିତ ସରଣୀର ପାଦ ଯାବୁଡ଼ ଧରି ଅନନ୍ତକାଳ ମୁହଁକୁ ଯେମିତି ଅତି କାତର ଭାବରେ ଅନେଇଚି ସେ । ତା ଛାତିର ମାଳଭଳାରେ ଭଗ୍ନ ରାଜପ୍ରାସାଦ ପ୍ରତି-ବିମ୍ବିତହୋଇ ତାକୁ ମୋହାବିଷ୍ଟ କରିଚି ଯେମିତି । ବର୍ତ୍ତମାନ ଉପରେ ବାରମ୍ବାର ଅଖି ବୁଲେଇ ସେ ଅନୁଶୋଚିତ ହେଉଚି—ସରଣୀ ଅଜ ବିଗତ ଯୌବନ, ରାଜପ୍ରାସାଦ ଧୂଳିସାତ୍ ହୋଇଚି, ରାଜବଂଶ ନିଶ୍ଚିହ୍ନ ହୋଇଚି । ଅଜ ତା ବଦଳରେ ପଡ଼ି ରହିଚି ପ୍ରାଚୀରରେ ଭଗ୍ନ ଶିଳା, ରାଜନବରର ଭଗ୍ନ ଇଷ୍ଟକ । ଅତୀତ ଅତୀତରେହିଁ ସମାଧି ନେଇଚି, କେବଳ ଉତ୍ତରକାଳପାଇଁ ରଖି ଯାଇଚି ସ୍ମୃତିର କେତୋଟା ଉପାଦାନ—ଇତିହାସର ଖାଦ୍ୟ, ହୁଏତ ଲେଖା ଯାଇନି ଇତିହାସ ।

ବଡ଼ ଭାବାବିଷ୍ଟା ଏଇ ଅଂଶୁପା ସତେ !

ଅତୀତକୁ ସ୍ୱପ୍ନ ଦେଖି ଦେଖି ଏବେ ଅଶ୍ରୁଳ ହୋଇ ଉଠୁଚି, ଅଥଚ ବର୍ତ୍ତମାନ ତାର ଉଦାସୀନତା ଭରି । ତାର ହୁଏତ ମନେ ପଡ଼ୁଚି ରାଜଜେମା ସଖୀ ଗହଣରେ ତା ବକ୍ଷରେ ଜଳକେଳି ରତ ତୀର ବନାନୀରୁ ବୃକ୍ଷଶାଖା ଭିତରୁ ରାଜକୁମାର ମିଳନ ସଂକେତ ତା ଛାତିକି ଫୋପାଡ଼ ଦେଉଚି । ମଧୁଚ୍ଛତା କରୁଚି ଦୂତ ସାଜି ସେ ନିଜେ । ମଧୁମିଳିତ ତାର ଫଳବତୀ ହେଉଚି—ଅଉ ତାରି ଲାଗି ସେ ଆନନ୍ଦରେ ଆତ୍ମହରା ହୋଇ ଉଠୁଚି ।

ସେଡିକ ଆଜ ନାହିଁ ।

କିନ୍ତୁ ତାର ବଳାମପ୍ତ ଆଜ ଶତାଧାରରେ ସହସ୍ରାଧାରରେ ତାର ସପନା ବଣ ଭିତରେ, ତାର ସ୍ମୃତ ଉପର ନୌକା ଗର୍ଭରେ ଅଭିସାରିକା ହୋଇ ଉଠୁଛି ଲୋକ-ଲୋଚନର ଅଗୋଚରରେ । ତାକୁ ଦେଖି ନିଶ୍ଚୟ ଆନନ୍ଦ ପାଉଥିବ ଅଂଶୁପା—ଗୋପନ ଅଭିସାରର ମୂକ ସାକ୍ଷୀ ସେ । ଅଭିସାରୀ ଅଭିସାରିକାଠାରୁ ଢେର ଅଧିକ ଆନନ୍ଦ ପାଉଥିବ । କିନ୍ତୁ ସେ କଣ ? ପରିସ୍ଥିତି ପୂରାପୂରି ଓଲଟି ଯାଇଛି । ସୃଷ୍ଟିର ଭଙ୍ଗା ଗଢ଼ା ନିଃସ୍ୱ ତା ମନକୁ ସାନ୍ତ୍ୱନା ଦେଇ-ପାରୁନି । ସେ ଆତ୍ମୀୟର ବିପର୍ଯ୍ୟୟ ସଂଦର୍ଶନରେ ନିସ୍ତ୍ରା, ସଂକୁଚିତା ଆଜ ଚିନ୍ତିତା ହୋଇ ଉଠୁଛି··· ।

ହ୍ୟାଲୋ ମିଷ୍ଟର, ଆପଣଙ୍କ ସପନା କଥା ଟିକିଏ ଶୁଣନ୍ତୁ—ବନ୍ଧୁ ମୋତେ ହଲେଇ ଦେଇ କହୁଲେ । ମୋର ଆବିଷ୍ଟତା ସେ ଯ୍ୱାର ଭିତରେ ଲକ୍ଷ୍ୟ କରୁଥିଲେ ବୋଧହୁଏ—ମୋର ଜାଗ୍ରତ ସ୍ୱପ୍ନ ଭଗ୍ନ ହେଲା । ମୁଁ ଅତର୍କିତ ଭାବରେ ଚମକି ପଡ଼ିଲି ।

ଅପ୍ରସ୍ତୁତ ଗଳାରେ ପଚାରିଲି—କଣ କହୁଲେ, ସପନା ?

ବନ୍ଧୁ ହସିଦେଲେ । ଅତି ଲଘୁ କଣ୍ଠରେ ସେ କହିଲେ—କଣ ଏକାବେଳକେ ତନ୍ମୟ, ମନେ ମନେ କଣ ପଦ ଯୋଡ଼ୁଥିଲେ କିଛି ଗୋଟାଏ ଗଦ୍ୟ କବିତା ଫବିତା ଲେଖିବାକୁ ? କିନ୍ତୁ ସେଥିରେ ପଦ୍ ଜମା ପଦ ଯୋଡ଼ିବା ଦରକାର ହୁଏନି । ସମ୍ପ୍ରିଙ୍କର ଧୋବା-ହିସାବ-ଖାତା ଖୋଜିଲେ କୁଆଡ଼େ ଗଦ୍ୟ କବିତା ବାହାରିବ—କେବଳ ମୁଣ୍ଡ ଲଗେଇ ଟିକିଏ ଅନର୍ଥ କାଢ଼ି ପାରିଲେ ହେଲା । ଲୋକେ କହୁଛନ୍ତି ବିବାହ ବ୍ରତ ଆଦିରେ ଭୋଜଗୁଡ଼ିକ ଠିକାଦାରୀ ନେଇ ତାର ତାଲିକା କରୁ କରୁ ଇଲିଅଟ୍ କୁଆଡ଼େ ବଡ଼ ଗଦ୍ୟ

କବିତା ଲେଖକ ହେଲେ । ପୁଣି ଶେଷକୁ ନୋବେଲ୍ ପ୍ରାଇଜ୍ । ଆଉ ଆପଣ କାହିଁକି ଏତେ ଚିନ୍ତାକାନ୍ତ ?

ବନ୍ଧୁଙ୍କର ଶ୍ଳେଷୋକ୍ତି ମୋତେ ଅବୁଝା ରହିଲା ନାହିଁ । ମୁଁ ଟିକିଏ ହସ ହସ ହୋଇ ପଚାରିଲି—କଣ କହୁଥିଲେ ଆଉ ଥରେ କହନ୍ତୁ, ମୁଁ ପ୍ରକୃତରେ କିଛି ଶୁଣି ପାରିନି······ଏଇ ଅଂଶୁପା ଆଉ ସରଣ୍ଡା ଦୁହିଁରେ ଏକତ୍ର ସମାବେଶ ପ୍ରକୃତରେ କେଡ଼େ ସୁନ୍ଦର କେଡ଼େ ସ୍ୱାଭାବିକ ଥିଲା । କିନ୍ତୁ ଆଜି କଣ ହେଇଚି ?

ସୂର୍ଯ୍ୟରଶ୍ମି ଅଂଶୁପା ଉପରୁ ସେତେବେଳକୁ ଉଭେଇ ଉଠିଲାଣି···ବହୁତ ଉଭେଇ । ତଟବନର ବୃକ୍ଷାଗ୍ର କେବଳ ସ୍ୱର୍ଣ୍ଣାଭ ବିଭୂଷିତ ହୋଇ ଉଠୁଥାଏ । ଅପର କୂଳ ଭୂମି କୋଳାହଳ । ଅଧିକ ପ୍ରସାରିତ ବଳାକାପନ୍ତି ହ୍ରଦର ପରିପାର୍ଶ୍ୱର ସୌନ୍ଦର୍ଯ୍ୟ ବୃଦ୍ଧି କରୁଥାନ୍ତି କେବଳ । ଦିନମାନର ଶ୍ରାନ୍ତି ପରେ ସୂର୍ଯ୍ୟାସ୍ତରେ ଏମାନେ ଯେମିତି ନୀଡ଼ମୁଖୀ-ହୁଏତ କେଉଁ ମୁହୂର୍ତ୍ତରେ ଜାଗା ଛାଡ଼ି ଚାଲିଯିବେ କାହିଁ କେ-ଜାଣି···ଅନ୍ତତଃ ରାତିକପାଇଁ ବିଶ୍ରାମ ଲୋଡ଼ିବେ ।

ବନ୍ଧୁଙ୍କର ସ୍ୱର ଅପରିବର୍ତ୍ତିତ-ପ୍ରାୟ—ମୁଁ ଜାଣେ···ତମେ କଣ ଭାବୁଥିବ ! କିନ୍ତୁ ଏତେଟା ସ୍ୱପ୍ନବାଦୀ ହେବାକୁ ଏବକାର ଦୁନିଆଁ ପସନ୍ଦ କରେନି, ବାସ୍ତବବାଦୀ ହୁଅ । ଶୁଣ ଶୁଣ···ଅଚ୍ଛା ସପନା, ଆଉ ଥରେ ସେଇ କଥା କହିଯିବୁ ?

ସପନା କିଛି କହିବା ଆଗରୁ ମୁଁ ବନ୍ଧୁଙ୍କୁ ଛାଡ଼ି ସପନାକୁ ପଚାରିଲି—କଣ ନାଆ ନେବୁନି ସପନା, ବେଳପରା ଚାଲିଯାଉଚି । ଆମ୍ଭେମାନେ ଟିକିଏ ନାଆରେ ବସି ଖେଳଦେଲେ ଘରକୁ ଫେରିଯିବା—

ସପନା—ବାବୁ, ହାକିମ ଆସିଚନ୍ତି । ସେ ବାଉଁଶବୁଦା ଆଡ଼ୁ ଆଳରେ ତାଙ୍କର ତମ୍ବୁ ପଡ଼ିଚ···କେତେ ମଣିଷ ଜମା ହୋଇଚନ୍ତି ସେଠି ।

ସପନାକୁ କଥା କହିବାକୁ ଇଚ୍ଛା ହେଉନ । ବିରକ୍ତ ହେଲ ମନେ ମନେ···ବୋକା କେଉଁଠିକାର ? ନାଆ କଥା ପଚରିଲେ ହାକିମ ଆଜ ତାଙ୍କ ତମ୍ବୁ ଗପ କହୁଚ । ଏଗୁଡ଼ାକ ଉପରେ ଦାୟିତ୍ୱ ଛାଡ଼ିଦେଲେ ମଣିଷ ଧକଡ଼ାକୁ ବେକୁବ୍ ହେଇଯିବ ।

ତା ନିଜଆଡ଼ୁ ସପନା କହିଲା—ସେ ମାଝୀବୁଢ଼ା ଖଣ୍ଡିଏ ସାନ ମାଛଧରା ଡଙ୍ଗା ନେଇ ଏଆଡ଼କୁ ଆସୁଚ । ତାକୁ ବୁଝିବାରେ ସେ ଏଇପାଖ କୂଳରେ ଦଣ୍ଡେଧରା ବୁଲେଇ ଆଣିବାକୁ ରାଜି ଅଛି ।

ଟିକିଏ ବେଶି ରାଗ ହେଲା । ମୁହଁ ଖୋଲିବାକୁ ବାଧ ହେଲି—କିରେ ବୋକା, ତୋତେ ପରା ବଡ଼ ନାଆ ବୁଝିବାକୁ ପଠା ହୋଇଥିଲା, ତୁ ମାଛଧରା ଡଙ୍ଗା କଣ କହୁଚୁ ?

ସପନା—କହିଲି ପରା ବାବୁ, ହାକିମ ଆସିଚନ୍ତି···ସାଙ୍ଗରେ ପଲପଲି । ସବୁ ମାଝୀ ସବୁ ନାଆ ତାଙ୍କ ପାଖରେ ଅଟକ । ବେଳ ଡମିଗଲେ ହାକିମ ନାଆରେ ବୁଲି ବାହାରିବେ ।

ବଡ଼ ଅପଦସ୍ଥ ହେଲି ମନକୁ ମନ । ଅତି ଛୋଟ ଛୋଟ କଥା ବୁଝିବାକୁ ମଣିଷର ଥରେ ଥରେ ଧୈର୍ଯ୍ୟ ରହେନ । ଅତି ବୁଦ୍ଧିମାନ ମଣିଷ କେବଳ ଆତ୍ମପ୍ରୀତି ଲାଗି ବେଳେ ବେଳେ ନିର୍ବୋଧ ରକମର ଭାବନା ଭିତରେ ହୋଇ ପଡ଼େ । ସପନା କହିବା କଥାର ମର୍ମ ନ ବୁଝି ମିଛକୁ ମୁଁ ତା ଉପରେ ରାଗୁଚି । ଟିକିଏ ସାଧାରଣ ଗଳାରେ

ସପନାକୁ ପଚାରିଲି—ସବୁ ଗୁଡ଼ାକରେ କଣ ହାକିମ ବସିବେ ନା କଣ ?

ସେ କଥା ମୁଁ କହିପାରିବନି ବାବୁ—ସପନା କହିଲା ।

ବୁଢ଼ା ମାଝୀର ମାଛଧରା ଡଙ୍ଗାଖଣ୍ଡି ଆମେ ଥିବା ପାଖକୁଳକୁ ଲାଗି ଆସୁଥିଲା ସେତେବେଳକୁ । ସପନା ସାଙ୍ଗରେ ଏଇମିତି ବାଙ୍କେ କଥାବାର୍ତ୍ତା କରୁ କରୁ ବେଳ ଖସିଯିବାର ଆଶଙ୍କା କରି ବନ୍ଧୁ କହିଲେ— ଛାଡ଼ ସେସବୁ କଥା । ବେଳ ଯାଉଚି, ଟିକିଏ ବୁଲି ଆସି ଆମେ ସଅଳ ଫେରିବା ।

ମୁଁ ସମ୍ମତ ଜଣେଇଲି । ସପନା ନୀରବ ହୋଇ ଠିଆ ହୋଇଥାଏ । ଗଳା ନରମ କରି ବଡ଼ ଧୀର ଓ କଅଁଳ ଭଙ୍ଗୀରେ ବୁଢ଼ା ମାଝୀ ଆରମ୍ଭ କଲା—ବଡ଼ ଅଠିକଣା ଦିନଟାରେ ଆସିଲ ବାବୁ । ବଡ଼ନାଆ ସବୁ ହାକିମଙ୍କ ପାଖରେ ଅଟକଳରେ ରହିଯାଇଚି । ହାକିମ ସକାଳ ପହରୁ ଆସିଲେଣି ।

ଥାଉ ବୁଢ଼ା, ସେସବୁରୁ ଆମକୁ କଣ ମିଳିବ । ଏଇ ଛୋଟ ଡଙ୍ଗାରେ ଆମକୁ ଦଣ୍ଡେ ବୁଲେଇ ଦେ । ଆମେ ଫେରିଯିବୁ । ଆଚ୍ଛା ବୁଢ଼ା, ପିକା ଖାଇବୁ ? ବନ୍ଧୁ କହିଲେ ।

ବନ୍ଧୁଙ୍କର କଥା ଶୁଣି ଟିକିଏ ଖୁସି ଲାଗିଲା । ମୁଁ ତାଙ୍କର ଉଦ୍ଦେଶ୍ୟରେ ଅନାଇଲି । ଦେଖିଲି ବନ୍ଧୁ ହାତରେ ଖଣ୍ଡେ କାପ୍‌ଷ୍ଟେନ୍‌ ଆଉ ଦିଆସିଲାଇ ପୁଡ଼ିଆଟିଏ ଧରି ସେତେବେଳକୁ ବୁଢ଼ା ଆଡ଼କୁ ହାତ ବଢ଼ାଇ ଦେଉଥିଲେ । କୃତଜ୍ଞତାଭରା ବୃଦ୍ଧର ମୁଖ ପ୍ରସନ୍ନ ଜଣା ପଡ଼ୁଥିଲା । କମ କଥା ତ ନୁହେଁ । ଜୀବନର ଉତ୍ତର ପ୍ରାନ୍ତରେ ବୁଢ଼ା ଖଣ୍ଡେ ସିଗାରେଟ୍‌ ଖାଇବ—ହାକିମ ସାହେବଙ୍କର ଖାଇବା ପଦାର୍ଥ ।

ସିଗାରେଟ୍‌ରେ ନିଆଁ ଧରେଇ ପ୍ରଥମେ ଟାଣିବାକୁ ବୁଢ଼ା ଟିକିଏ ଅସ୍ବସ୍ତି ବୋଧ କଲା । ତଥାପି ଅମୃତସ୍ରୀର ଧୂମାୟିତ ବାତାବରଣ ତଳେ ସେ ଯେମିତି ନିକଟେଇ ଆସୁଥିଲା ଆମର ଆଡ଼କୁ ।

ବିଳମ୍ବ ନ କରି ଆମେ ଡଙ୍ଗାକୁ ଉଠିଲୁ । ହାକିମ କ୍ୟାମ୍ପର ବିପରୀତ ଦିଗରେ ଡଙ୍ଗା ଆମର ଅଗେଇବାକୁ ଲାଗିଲା । ମୋତେ ଇଙ୍ଗିତ କରି ମୋର ଉଦ୍ଦେଶ୍ୟରେ ବନ୍ଧୁ ଶୁଣେଇଲେ—ତରୁଣ କବି ଲେଖମାନ୍ତୁ ବେଶ ଏଥର ଗୋଟାଏ ଅଂଶୁପା-ବିହାର କି ଆଉ କ'ଣ ଆଶା କରୁ ।

କାହିଁକି ହଠାତ୍ କବିତା ପ୍ରତି ପ୍ରାଣ ଏମିତି ଦରଦୀ ହୋଇ ଉଠିଲା—ମୁଁ କହିଲି । ବନ୍ଧୁ କହିଲେ—ଆରେ ଆପଣ ବିଗିଡ଼ିଗଲା ପରି କଥାବାର୍ତ୍ତା ଆରମ୍ଭ କଲେଣି । କାହିଁକି, ଆପଣ କବିତା ଲେଖନ୍ତି ବୋଲି ମୁଁ କବିତା କଥା କହିଲି । ନ ହେଲା, ଆପଣ ଉପନ୍ୟାସ ଲେଖନ୍ତୁ, ନ ହେଲେ ଗଳ୍ପ ଲେଖନ୍ତୁ । କିଏ କଣ ମନା କରୁଛି ! 'ବିଷକନ୍ୟା' ପାଇଥିଲେ ପଢ଼ିଥାନ୍ତୁ, 'କଳିଙ୍ଗଶିଳ୍ପୀ' ପାଇଲେ ମଧ୍ୟ ପଢ଼ିବୁ । ଆମେ ତ କିଛି ସମାଲୋଚକ ନୋହୁଁ, ପାଠକ ଆମେ । ଯାହା ଗୋଟେ ପାଇଲୁ ପଢ଼ିଯିବା ହେଲା ଆମର କାମ ।

ହଁ ପାଠକ ନିର୍ବୋଧ ହେଲେ ତାର ଆଉ କଣ କାମ ହୋଇପାରେ ?—ବନ୍ଧୁଙ୍କୁ ଚିଡ଼ାଇବା ମୋର ଲକ୍ଷ୍ୟ ଥିଲା ।

ହଉ ବନ୍ଦ କରନ୍ତୁ ବକ୍ତୃତା, କଅଁ କିଛି ନ ଲେଖିବ ତ ନ ଲେଖ, କିଏ ଗୋଡ଼ହାତ ଧରୁଛି ? ସେଥିଲାଗି ଚିଏକୁଟ ପର୍ବତର ସନ୍ଧ୍ୟା ଛାଇ ଉପରେ କୋପଦୃଷ୍ଟି ପକେଇବାକୁ ଆରମ୍ଭ କରି ଦେଲଣି ଦେଖୁଛି······ବିଚରା ପାଠକେ ତମର କଣ ହାନି କଲେ କହିଲ ?—ବନ୍ଧୁ କହିଲେ ।

କଣ ଦୁଃଖ କରୁଛନ୍ତି ? ଆପଣମାନଙ୍କର ଗୋଷ୍ଠିର ସିଏ ସତ୍ ଧର୍ମ ହେଲା । ବାଛବଗୁର ଗୋଟାଏ କ ଜନଷ ସେଇଟା ଆପଣମାନେ ଜାଣନ୍ତିନି । ଚୋରକୁ ପୁରସ୍କାର ଦେଇ ନିର୍ଦ୍ଦୋଷକୁ ଦଣ୍ଡଦେବା ଆପଣମାନଙ୍କର ନୀତି ହେଲା—ମୁଁ ଉତ୍ତର ଦେଲି ।

ଥାଉ । ପ୍ରସଙ୍ଗ ଏତିକିରେ ବନ୍ଦ କର୍‌ଯାଉ······ଡଙ୍ଗା ବହାର କହେଁତର ହେଲା—କହୁ ବନ୍ଧୁ ଆମ ତର୍କର ଯବନିକା ପକାଇଲେ ।

ଅସନ୍ନ ସାଂଧ୍ୟ ସମୀରଣ କାଟି କାଟି ଡଙ୍ଗା ଖଣ୍ଡି ବେଗବାନ୍ ହୋଇ ଉଠୁଥାଏ । ବୃଦ୍ଧ କିନ୍ତୁ ଅତି ନିବିଷ୍ଟ ଚିତ୍ତରେ ଆମ ଦୁହିଁଙ୍କର ବାଚନିକତା ପାନ କରି ଯାଉଥିଲା । ମୁଁ ମୋର ମନର ଢଙ୍ଗ ବଦଳାଇ ପଚାରିଲି—କଣ ବୁଢ଼ା, ଆମ କଥାସବୁ ଜାଣୁଚ ତ ?

ନା ବାବୁ, ମୂର୍ଖ ଆମେ କଣ ବୁଝିବୁ । କଣ ପୁରାଣ କଥା କହୁଥିଲ ବନ୍ଦ କରିଦେଲ ବାବୁ ?—ବୃଦ୍ଧ ପ୍ରଶ୍ନ କଲା ।

ବନ୍ଧୁ ବୃଦ୍ଧର ପକ୍ଷ ସମର୍ଥନ କଲେ, କହିଲେ—ଅଚ୍ଛା ବୁଢ଼ା, ପୁରାଣ ତ ଶୁଣିବ । ଟିକିଏ ଆମ କଥା ଆଗ ବୁଝିଦେଲୁ ।

ବୁଢ଼ା ସନ୍ତୁଷ୍ଟ ନୟନରେ ଆମକୁ ଅନାଇଲା । କଣ ଆମ କଥା ବୁଝିଦେବ ସେ ? ତା ପାଇଁ ପଥ ସୁଗମ କରିଦେବା ବାହାନା କରି ମୁଁ କହିଲି—ଆମ ପାଇଁ ଦୁଇସେର ମାଛ ଯୋଗାଡ଼ କରିଦେବୁ ବୁଢ଼ା ! ଆମେ ଘରକୁ ନିଅନ୍ତୁ ।

ବୁଢ଼ା ଜବାବ ଦେଲା ଏଥର—ସେଇକଥା କହିଲେ ବାବୁ, ଆଜି ପରା ଯାଗ ବଢ଼ିଛି ଯାଇଚି, ଆଉ ମାଛ କେଉଁଠୁ ମିଳିବ ? ଆଜି ସବୁ ମାଛ ହାକିମଙ୍କ ଭେଟିରେ ଗଲା ।

କେଉଁଠି ?—ମୁଁ ଉଦ୍‌ବିଗ୍ନ କଣ୍ଠରେ ପଚାରିଲି ।

ହାକିମଙ୍କ ପାଖକୁ ଆଜ ସବୁ ମାଛ ଚାଲିଗଲା । କାଲି ରାତିରୁ ବୁଢ଼ା ଚଉକିଆ ଗାଁରେ କହିଯାଇଥିଲା, ଆଜିର ମାଛଧରା ହାକିମଙ୍କ ପାଇଁ ବୋଲି । ତା ଉପରକୁ ଅଧିକ ବିପତ୍ତି ବାବୁ, ବେଶି ବଡ଼ ମାଛ ଆଜି ଜାଲରେ ଲାଗିଲେନି—ବୁଢ଼ା କହି ଚାଲିଥାଏ ।

ବେଶି ନ ହେଲେ କ୍ଷତି କଣ ? ଅଂଶୁପାଯାଙ୍କ ବଡ଼ମାଛ ତ ଆଜ ହାକିମ ସବୁ ଖାଇବେନି—ବନ୍ଧୁ କହିଲେ ।

ବୁଢ଼ା—ସେ କଥା ନୁହଁ ବାବୁ । ହାକିମ ତ ମୋଟେରୁ ମାଛ ଖାଇ ନାହାନ୍ତି । ସରପଞ୍ଚ ଆପଣେ ଅଣ୍ଡା କୁକୁଡ଼ା ଦୁଧ ବାହାରେ ହାକିମଙ୍କୁ ପୋତି ପକେଇଲେ । ବାବୁଆଣୀ ଖାଲି ରାଗ ହେଲେ···ଏ ମାଛ ତାଙ୍କ ମନକୁ ଆସିଲାନି ବୋଲି । ହାକିମଙ୍କର କୁଆଡ଼ିକି ମାଛ ପଠାଇବାର ଥିଲା । ସାନ ପୁଅ ହେରିକା ଧରି ଆଜି ବେଳାବେଳି ବାହାରିଗଲେ······ଏଇ ବେଳଆ ଘରକୁ ଫେରୁଥିବେ ।

ତୋ ସାନ ପୁଅ ମାଛ ଧରି ଯାଇଚି ବୋଲି କହୁଚୁ ବୁଢ଼ା ? —ବନ୍ଧୁ ପ୍ରଶ୍ନ କଲେ ।

ବୁଢ଼ା—ଅଜ୍ଞା ।

ବନ୍ଧୁ—କ୍ଷତି କଣ, ମଜୁରି ତ ପାଇବୁ ?

ବୁଢ଼ା—ବୁଝିଲେ ବାବୁ ମଜୁରି ପାଇବ ? ମାଛରୁ ମାଛ ଗଲା । ବଣଠାପାଙ୍କ ପୁଣି ଦାନସାରି କହେଇ, ଅଧିକ ବାବୁଆଣୀ ଚଢ଼େଇ ଶୀକାର କରିବେ ବୋଲି ଗାଁ ଗୋଟାକର ନାଆ, ମାଝୀ ସାରି ଦାନଠାପାଙ୍କ ହାକିମଙ୍କ ଡେରା ପାଖେ ହାଜର । ଆଜ ମଜୁରି କିଏ ଦଉଚି ? ଓଲଟି କିଏ ଡେରିକଲା, କିଏ କଣ ଭୁଲ କଲା ବୋଲି

ସରପଞ୍ଚ ଦଣ୍ଡିବ, କଣ ନାଇଁ କଣ ରିପୋର୍ଟ ଦେବ, ଦଣ୍ଡରେ କଚେରୀକୁ ଧାଇଁ ଧାଇଁ ଗୋଡ଼ ଗୁନ୍ଦ ଫୁଟିଯିବ········

ବନ୍ଧୁ—କଣ ସରପଞ୍ଚ ଏମିତି କଡ଼ୁଆ ଲୋକ ?

ବୁଢ଼ା—କାହିଁକି କହୁଛନ୍ତି ଆଜ୍ଞା, ଆପଣ ତ ମଣିଷ ଚରାଉଛନ୍ତି । କଣ ଜାଣୁ ନ ଥିବେ, କିଏ କଡ଼ୁଆ ଆଜିକାଲି ? ମିଛକୁ ସେ ଗୋଟେ ଫଅଁ ନା···ଖାଲି ଆମକୁ ଜଅସ୍ତର କରି କେତେଲେଇ ଖାଇବାକୁ ସମସ୍ତେ କଡ଼ୁଆ—କହି ଗୁଳୁଥାଏ ବୁଢ଼ା ।

ମନେ ମନେ ବୁଢ଼ାର ମନସ୍ତତ୍ତ୍ୱକୁ ମୁଁ ନୀରବ ବିଶ୍ଳେଷଣ କରୁଥାଏ ।

କଣ ନ ଜାଣନ୍ତି ଏମାନେ ? କେବଳ ପ୍ରତିକ୍ରିୟାକୁ ବାସ୍ତବ ରୂପ ଦବାରେ ଏମାନଙ୍କ ଅଣ୍ଟାରେ ବଳ ନାହିଁ । ସେଇଥିଲାଗି ଲାଲ ଆଖିର ଶୋଷକଶାସ୍ତ୍ରିତ ଧମକ ବଚ୍ଛୁଦରେ ଏମାନଙ୍କର ଅଶିକ୍ଷା ଆଉ ଦାରିଦ୍ର୍ୟ ପ୍ରତିବାଦ କରିବାକୁ ସାହସ କରନ୍ତି ନା । ତଥାପି ଏମାନେ ବଞ୍ଚିଛନ୍ତି ଏମାନଙ୍କ ଜୀବନରେ ଆତ୍ମତୃପ୍ତି ଭରି ରହିଛି । ଏଇମାନେହିଁ ଗଢ଼ି ଆସିଛନ୍ତି ଆମ ଦେଶର ସ୍ୱର୍ଣ୍ଣ କଥା, ସାରା ରାଜ୍ୟ ପାଳିକରି ନରମାଂସ ଯୋଗାଇ ରାକ୍ଷସ କବଳରୁ ରାଜ୍ୟରକ୍ଷା କରିବାର ଗାଥା ଏଇମାନେ ହିଁ ତିଆରି କରିଥିଲେ···ଅତ୍ୟାଚାରର ନିକଟରେ କରୁଣ ଆତ୍ମସମର୍ପଣ । ଧ୍ୱଂସର କରାଳ କବଳରୁ କେବଳ ଅଶ୍ରୁପ୍ରତିକାରର ରାହା ନ ପାଇ ତାର ସୁଅକୁ ଟିକିଏ ରୋକିଦେବାର ପରିକଳ୍ପନା ଏଇମାନେ କରିଥିଲେ ଭବିଷ୍ୟତ ପାଇଁ ହୁଏତ ସେତେବେଳେ ଏମାନଙ୍କର ଆସ୍ଥା ବିଲକୁଲ ନ ଥିଲା ଅଥବା ଖୁବ୍ କମ୍ ଥିଲା । ତଥାପି ଧ୍ୱଂସକୁ ଶୃଙ୍ଖଳିତ କରି ଆୟତ୍ତାଧୀନ କରିବାର ଚେଷ୍ଟା ପ୍ରାଜ୍ଞଙ୍କର ମୁଣ୍ଡକୁ ସେତେବେଳେ ଜୁଟିଥିଲା ।

ଠିକ୍ ସେଇ ଗ୍ରାମରେ ଚଳା ପୁରୁଣା ମଣିଷ ଏମାନେ···ସରଳ ···ଅତି ସରଳ। ସଂହତି ଏମାନଙ୍କର ଅଜ୍ଞତା ତଳେ ଲୁକ୍କାୟିତ ···ସଂଗଠନ ଏମାନଙ୍କର ଦାରିଦ୍ର୍ୟ ତଳେ ନିଷ୍ପେଷିତ। ପ୍ରତିବାଦରେ ଏମାନଙ୍କର ବିଶ୍ବାସ ନାହିଁ···ପ୍ରତିରୋଧର ପକ୍ଷପାତୀ ନୁହନ୍ତି ଏମାନେ। କୁର୍ମଠାରୁ ସହନଶୀଳତା ଏମାନେ ଶିଖିଛନ୍ତି···ପଥର ବୋହିବାର ଅଭ୍ୟାସ ମଜ୍ଜାଗତ ହୋଇ ଯାଇଚି। ଶାସନତନ୍ତ୍ରର ଅବୌଧିକୁ ଘୃଣା କରିବାର ନୈତିକ ପ୍ରତିକ୍ରିୟା ଛଡ଼ା ଏମାନଙ୍କ ଜୀବନରେ ବିପ୍ଳବ ନାହିଁ। ପରମ୍ପରା କହେ ଏମାନେ ଯୁଗ ଯୁଗ ଧରି ଅଭିଶପ୍ତ-ସେଇମିତି କଟିବ ଏମାନଙ୍କର ଜୀବନ। ଉନ୍ନୈଶିଶ ପଞ୍ଚାବନ ପ୍ରତି ଏମାନଙ୍କର ମମତା ନାହିଁ, କିମ୍ବା ଉନ୍ନୈଶିଶ ଷଡ୍ଟ୍ରିଂଶ ପ୍ରତି ଏମାନଙ୍କର ଘୃଣା ନ ଥିଲା। ଶ୍ରମ କରିବେ, ଚିରଦିନ ପାଇଁ ଶ୍ରମ କରିବେ···ସେଇ ଏମାନଙ୍କର ତୃପ୍ତି···ପରମ ମାନସିକ ତୃପ୍ତି। ଅଭ ମଝିରେ ମଝିରେ ଏମାନଙ୍କୁ ତୃପ୍ତି କରିବାକୁ ହେବ ଦଳେ ତାଙ୍କର ଜାତିର ମଣିଷଙ୍କୁ। ଶିକ୍ଷା ସଭ୍ୟତାକୁ ଭୟ କରନ୍ତି ଏମାନେ···ଅଂଶୁପାର ନୀଳ ବୁକୁ ଉପରେ ଭାସମାନ ନାଆ ମଙ୍ଗରେ ବସି ପ୍ରକୃତି ସଙ୍ଗରେ ଏକ ହୋଇ ଯିବାକୁ ବରଂ ପସନ୍ଦ କରନ୍ତି। ଅତ୍ୟାଗ୍ରହର ଶୋଷଣକୁ ଯେମିତି ଏମାନଙ୍କର ଜମା ଖାତିର ନାହିଁ···ଅତି ଉଦାସୀନ ଭାବରେ ଏମାନେ ତାକୁ ମାନି ନିଅନ୍ତି···କାହିଁକି?

ହଠାତ୍ ବନ୍ଧୁକର ଯୁଗ୍ମ ଆୱାଜ ମୋର ଚିନ୍ତା ତନ୍ଦ୍ରା ଛିନ୍ନକଲା। ମୁଁ ମୁହଁ ଟେକି ଚାହିଁଲି। ଆମେ କୂଳରୁ ବହେ ବାଟ ଚାଲି ଆସିଲୁଣି। ସୂର୍ଯ୍ୟ ପ୍ରାୟ ବୃକ୍ଷ ଶିଖାଉପରେ। ବୁଢ଼ା ମୋତେ ଲକ୍ଷ୍ୟ କରି ପ୍ରଶ୍ନ କଲା—କଣ ଚମକି ପଡ଼ିଲ ବାବୁ? ସେ ପାଖ ପାଟ ଦହରେ ହାକିମ ଶୀକାର କରୁଚନ୍ତି···ସେଇଠାରୁ ବନ୍ଧୁକ ଫୁଟିଲା।

ନା ନା, ମୁଁ ବେଳ ଦେଖୁଥିଲି । ଆଉ ବୁଲିବାକୁ ସମୟ ନାହିଁ । ତଙ୍ଗା ଫେରି ବୁଢ଼ା, ଏଥର କୂଳକୁ ଫେରିଯିବା—ମୁଁ କହିଲି ।

ବିନା ଦ୍ୱିଧାରେ ବୃଦ୍ଧ ସମ୍ମତି ଜ୍ଞାପନ କଲା । ସଙ୍ଗେ ସଙ୍ଗେ ତଙ୍ଗାର ଆଗ ମଙ୍ଗ ପଛକୁ ବୁଲିଗଲା । ଅସ୍ତସୂର୍ଯ୍ୟର ଶେଷ ରଶ୍ମି ସରଣ୍ତା ଅଦ୍ଧୁ ଅଳରେ ଲୁଚି ଯାଉଥିଲା । ରକ୍ତାଭ ପଶ୍ଚିମାଶା ଅସ୍ତରାଗ ରଂଜିତ କମନୀୟ ପଟ୍ଟପାଠୀ ଭିତରେ ଉଦ୍‌ଭାସିତ ହୋଇ ଉଠୁଥାଏ । ସେଇ ବର୍ଣ୍ଣବିଭାସ କିନ୍ତୁ ଅଂଶୁପାଠାରୁ ଦୂରେଇ ରହିଥାଏ—କେବଳ କିୟଦଂଶ ପ୍ରତିବିମ୍ବିତ ହୋଇ ଉଠୁଥାଏ ଘାଟବନର ବୃକ୍ଷ ଏବଂ ଅଦୂରସ୍ଥ ପାହାଡ଼ନାସୀ ଅତିକ୍ରମ କରି । ଠିକ୍ ତଳର କମନୀୟତା ଅଂଶୁପା ବକ୍ଷରୁ ଉଭେଇ ଯାଉଥାଏ—ସେ ରୁକ୍ଷମୂର୍ତ୍ତି ଧାରଣ କରି ଆସୁଥାଏ । ତାର ଗାଢ଼ ନୀଳ ସଲିଳରାଶି କୃଷ୍ଣ-ନୀଳ ଦେଖାଯାଉଥାଏ । ଗୋଧୂଳି ସେଇଠି ପ୍ରଭାହୀନ···ନୈରାଶ୍ୟ ଜର୍ଜରିତ···କାରୁଣ୍ୟସୂଚକ ।

ବନ୍ଧୁ ସମୟ ଅତିବାହିତ କରିବାକୁ ବୋଧହୁଏ, ପୁଣି ଆରମ୍ଭ କରିଦେଲେ—ଆଚ୍ଛା ବୁଢ଼ା, ସବୁ କଥା ତ କହୁଚୁ । ସତ କହିଲୁ ଦେଖି ଅଂଶୁପାରେ ମାଛ ଧରିବାକୁ ତମକୁ କିଏ ହୁକୁମ ଦେଇଚି ?

କାହିଁକି ବାବୁ, ଆମର ପଞ୍ଜା ଅଛି । ବର୍ଷକୁ ତିରିଶ କୋଡ଼ି ନା କଣ ଆମେ ସରକାର ଘରକୁ ସଲାମୀ ପରି ଗଣୁଚି । ଆମକୁ କଣ ହୁଦହା କିଏ ମୋଫତ୍ତ ଛାଡ଼ି ଦେଇଚି—କଥା ଉପରେ ଜୋର ଦେଇ ବୃଦ୍ଧ ବନ୍ଧୁଙ୍କ ପ୍ରଶ୍ନର ଉତ୍ତର ଦେଲା ।

ଅରେ ମୋଫତ୍ତ କଥା ମୁଁ କଣ ଇମା କହୁଛି ? କେବଳ ମାଛଧରା ସଲାମିଟା ସରକାର ତମମାନଙ୍କଠାରୁ କଣ ନିଏ ସେଇଟା

ଜାଣିବାକୁ ଟିକିଏ ସୁଯୋଗ ଦେଲି ନା—ବନ୍ଧୁ ବୁଢ଼ାକୁ ବୁଝେଇ ଦେଲେ ।

ଝୁଲ ଆମକୁ ନିକଟେଇ ଆସୁଥାଏ । ବୃଦ୍ଧ ବନ୍ଧୁଙ୍କ ଜବାବରେ ଆଉ କିଛି ମତାମତ ନ ଦେଇ ଓଙ୍ଗାକୁ ଗମ୍ଭୀରଜଳ ଭିତରେ ଝୁଲକୁ ଆଣିବା ଉଦ୍ଦେଶ୍ୟରେ ଟିକିଏ ବଙ୍କେଇ ବଙ୍କେଇ ଚଳାଉ ଥାଏ । ଅଯଥା ବିଳମ୍ବକୁ ଡର ମୁଁ ସାଙ୍ଗେ ସାଙ୍ଗେ ପକେଟରୁ ଖଣ୍ଡିଏ ଦଶଟଙ୍କିଆ ନୋଟ ବାହାର କରି ବୃଦ୍ଧ ଉଦ୍ଦେଶ୍ୟରେ ହାତ ବଢ଼ାଇଲି । ମୋ ହାତର ଦଶଟଙ୍କିଆ ନୋଟ ଦେଖି ଆଶ୍ଚର୍ଯ୍ୟ ହେଲା ବୃଦ୍ଧ । ସେ କହିଲା—ବାବୁ, ମୋ ପାଖରେ ତ ରେଜା ନାହିଁ···ଜଣ ପିଛା ସିଉଜାଏ କରି ମୋତେ ବାରଅଣା ପଇସା ଦିଅନ୍ତୁ ।

ବୃଦ୍ଧର ଅମାୟିକ ନିବେଦନ ଶୁଣୁ ଶୁଣୁ ବନ୍ଧୁ ମୋତେ ଅନାଇ ହସିଲେ କେବଳ । ଅତି କୋମଳକଣ୍ଠରେ ମୁଁ କହିଲି—କିଏ ତୋତେ ରେଜା ମାଗୁଛି ବୁଢ଼ା ? ମୁଁ ସବୁ ତୋତେ ଏ ନୋଟଖଣ୍ଡି ତୋ ଭାମ ପାଇଁ ଦେଉଛି ।

ମୋ କଥାକୁ ବୃଦ୍ଧ ବିଶ୍ୱାସ କରି ପାରିଲାନି । ବରଂ ମୋଠାରୁ ଏତକ ଶୁଣି ସେ ଟିକିଏ ଅପ୍ରସ୍ତୁତ ହେଲାପରି ଜଣାପଡ଼ିଲା । ନୋଟ ଖଣ୍ଡି ମୋ ହାତରୁ ନବାକୁ ତାକୁ ସାହସ କୁଳେଇଲା ନାହିଁ । ସେ କେବଳ ବଲବଲ କରି ମୋ ମୁହଁକୁ ଗୁହିଁଲା ।

ମୁଁ ପୁଣି ଥରେ ଆଶ୍ୱାସନାଭରା ଗଳାରେ କହିଲି—ଅରେ ନେ, ଭାବୁଚୁ କଣ ? ମୁଁ ସବୁ ନିଜେ ତୋତେ ଦେଉଛି ।

ବିନା ବାକ୍ୟବ୍ୟୟରେ ସେ ହାତ ବଢ଼େଇ ନୋଟ ଖଣ୍ଡିକ ଧରୁ ଧରୁ ତାକୁ ମୁଣ୍ଡରେ ଲଗାଇଲା । ଚକ୍ଷୁପୁଟ୍ ତାର କୃତଜ୍ଞତା-

ବ୍ୟକ୍ତିଙ୍କ । ଡଙ୍ଗା ସେତେବେଳକୁ କୂଳକୁ ଲଗି ସାରିଥିଲା । ଆମ୍ଭେମାନେ ଡଙ୍ଗା ଛାଡ଼ି କୂଳକୁ ଉଠିଲୁ ।

ସେଇ ଡଙ୍ଗା ଭିତରେ ଥାଇ ବୃଦ୍ଧ କହିଲା—ରହିଲ ବାବୁ, ଏ ଗରିବ ପ୍ରତି ଦୟା ରଖିବେ···ଅବଧାନ !

ଆମ୍ଭେମାନେ ତାର ଉଦ୍ଦେଶ୍ୟରେ ପ୍ରତି ନମସ୍କାର ଜଣାଇଲୁ । ମୁହୂର୍ତ୍ତିଏ ଗଡ଼ଯାଇନି ।

ଆମ୍ଭମାନଙ୍କର ଏଇ ହାର୍ଦ୍ଦିକ ବନ୍ଦନମସ୍କୁ ପଣ୍ଡ କରିବା ଉଦ୍ଦେଶ୍ୟରେ ଯେମିତି ଏକ ସ୍ୱତମତ ଚକ୍ରାନ୍ତ କରି ବନ୍ଧୁକର ରୁଷ୍ଟଆର୍ଦ୍ୟାଙ୍କ ଦ୍ୱିତୀୟଥର ପାଇଁ ଆମ୍ଭମାନଙ୍କୁ ଚମକେଇ ଦେଲା । କିନ୍ତୁ······ ।

ମନେ ଅଛି ପ୍ରିୟା ? ତୋ ନାଆଁ ନେଇ କ୍ଲାସରେ ଯେଉଁ ଧନ ଘମାଘୋଟ ତର୍କ ଲଗିଲା—ଇନ୍ଦୁ କହୁ ଚାଲିଥିଲା—ଦଳେ ପିଲା କହୁଲେ 'ପ୍ରିୟା' ଜାତି ବାଚକ, ଆଉ ଦଳକ କହୁଲେ ନା ନା ନାମବାଚକ ସେଇଟା ।

ମ ଏସବୁ କଥା କଣ ଏତେ ଶୀଘ୍ର ପାଶୋର ଯିବ ? ଶେଷକୁ ବୁଢ଼ା ପତି ବାବୁ ମଧ୍ୟସ୍ଥ ହେଲା କଳି ଭାଙ୍ଗିବାକୁ, ଫିଲସଫି କ୍ଲାସ ଥିଲା, ନୁହଁ ? ପ୍ରିୟା ଜବାବ ଦେଲା ।

ଆରେ ଠିକ୍ ଠିକ୍ ମନେ ରଖିଚୁ ତ, ମୋର ସବୁଟା ମନେ ନ ଥିଲା । ବିଚରା ବୁଢ଼ାଲୋକ ଭଦ୍ରଲୋକ ଜର ଖାଲି ହଇରାଣ ହେଲା ସିନା—ପ୍ରିୟାର ଅନୁମୋଦନ ପାଇଁ ଯେମିତି ଅପେକ୍ଷା କରୁଥିଲା ଇନ୍ଦୁ ।

ପ୍ରିୟା ଟିପ୍ପଣୀ କଲା—ତୁ ନିଜେ ଭାବିଲୁ କଣ ଆଉ ହୋଇ ପାରିଥାନ୍ତା ? ସମାଧାନର ଉପାୟ ନ ଖୋଜି ମଧ୍ୟସ୍ଥ ଓଲଟା ଯୁକ୍ତି କଲେ 'ପ୍ରିୟା' ଟା ଲଜିକ୍ ଅନୁସାରେ ଜାତିବାଚକ ବିଶେଷ୍ୟ । କାରଣ ଶବ୍ଦଟା କନୋଟେଟିଭ୍, ମାତ୍ର ଏବେ କାଳର ବାପମାଆମାନେ ତାକୁ ନାମବାଚକରୂପେ ବ୍ୟବହାର କଲେଣି । ମୂଳରୁ ପ୍ରିୟା ଶବ୍ଦର କନୋଟେସନ୍ ଅଛି, ତେବେ ନାମବାଚକ ହେଲେ ନନ୍‌କନୋଟେସିଭ୍ ବୋଲି ଧରିବାକୁ ହେବ । ଆଉ ବର୍ତ୍ତମାନ କ୍ଷେତ୍ରରେ ନାମ ହିସାବରେ ଶବ୍ଦଟାର କନୋଟେସନ୍ ନାହିଁ । ଯଦି କିଛି ଥାଏ ସେଇଟା ଇଚ୍ଛାକୃତ କନୋଟେସନ, ଯେମିତି ଇଂଲଣ୍ଡ କହିଲେ କିଛି ଅର୍ଥ ହୁଏନି ମାତ୍ର ଚଳଣୀଯୋଗରେ ଇଂଲଣ୍ଡ ଅର୍ଥଦ୍ୟୋତକ ହୋଇ ପଡ଼ିଲାଣି । ପୁଣି ଶେଷକୁ କହିଲେ ଯେ ତାଙ୍କ ମତରେ ପ୍ରିୟା ବିଶେଷ୍ୟପଦ ବୋଲି

ଧରି ନିଆଯାଇ ପାରେ—ଫଳରେ ସବୁ ପିଲା ହସିଉଠିଲେ । ସେମାନେ କହିଲେ—ସାର୍, ଉତ୍ତରମେରୁ ଦକ୍ଷିଣମେରୁ ଦେଇ ଘୂରି ଆସିବା ପରେ ଆପଣ ପୁଣି ବିଷୁବରେଖା ପାଖରେ ପହଞ୍ଚିଗଲେ—ଭଲ ସମାଧାନ କଲେ ଆପଣ ? ଆମର କଥା ଥିଲା 'ପ୍ରିୟା' ଶବ୍ଦ ଗୋଟିକ ନା ନାମବାଚକ, ଆପଣ ସେତିକି ନ କହି ଆମକୁ ବିଶେଷ୍ୟପଦ ପାଖରେ ପହଞ୍ଚାଇ ଦେଲେ ?

କଥା ମଝିରେ ଇନ୍ଦୁ କହିଲା—ସତରେ ପ୍ରିୟା, ମୋ ମନରେ ବଡ଼ ରାଗ ହେଲା ସେଦିନ । ପୁସ୍ତକଟାରୁ ଯାହା ଗୋଟାଏ ଝିଅ ନାଆଁକୁ ଇମିତି କ୍ଲାସ ଭିତରେ ଚର୍ଚ୍ଚା କରିବା କେତେ ଦୂର ଯୁକ୍ତିଯୁକ୍ତ ମୁଁ ଭାବି ପାରିନଥିଲି । ତା ଛଡ଼ା ବୁଢ଼ାଟାଙ୍କୁ ଏମିତି ହଇରାଣ କଲେ, ବିଚରା କ୍ଲାସ ନ ନେଇ ରାଗ ତମତମ ହୋଇ ଶେଷରେ କ୍ଲାସରୁ ଚାଲିଗଲା । ତୋତେ ସେଦିନ କ୍ଲାସ କିମିତି ଲାଗୁଥିଲା କେଜାଣି ?

ମୋତେ ?—ପ୍ରିୟା କହିଲା, ବେଶ୍ ଭଲ ଲାଗୁଥିଲା । ବୁଢ଼ା ତା ମଝିରୁ ଠିକ୍ ପୁରସ୍କାର ପାଇଛି ଆଉ ମୋ ଧାରଣା ଏବେ ମଧ୍ୟ ବଦଳିନି । ସେଥିପାଇଁ ଠିକଣାଖି ସବୁ ମନେ ରଖିଛି । ଯେତେ କଣ ? ଜଣେ ଝିଅ କଥା ଆଲୋଚନା କରି ଯଦି ଦଶଜଣ ନା ନା ପଚାଶଜଣ କିମ୍ବା ତାଠୁଁ ବେଶି ଲୋକଙ୍କର ମନରେ ଆନନ୍ଦ ଅସେ ତାହିଁରେ ଦୁଃଖ କରିବାର କଣ ଅଛି ? ବରଂ ତହିଁରେ ଢେର ଆନନ୍ଦ ପାଇବାର କଥା । ବିଶେଷତଃ ସବୁ ନାଆଁ ନେଇ ତ କେବେ କେହି ଆଲୋଚନା କରେନି, ଯେମିତି କେସ୍ ପାଞ୍ଚଶଗୁଣରେ ଗୋଟାଏ— ଆଉ ସେଇ ଗୋଟିକ ଯଦି ତୁ ହୋଇଥାନ୍ତୁ ଇନ୍ଦୁ ! ତୁ କଣ ମନେ ମନେ ଗର୍ବ ଅନୁଭବ କରି ନ ଥାନ୍ତୁ ? ତୋ ପାଖରେ ତ କିଛି

ଗୋଟାଏ ବିଶେଷତ୍ୱ ଥିବାରୁ ତା କଥା ପରୀକ୍ଷକଙ୍କ ମନକୁ ଛୁଇଁଲା ? ତୁ ତ ଜାଣୁ ସାଇକଲଜି ପ୍ରତି ମୋର ଆଗ୍ରହ କେମିତି ଅତି ବେଶି । ମୁଁ ଫ୍ରଏଡ଼ଙ୍କ ଲେଖଚୟନ, ବିଶେଷତଃ ଯୌନ—ବିଶ୍ଳେଷଣଟା ବେଶ ମନ ଦେଇ ପଢ଼ିଛି । ଯୌନ ବୁଭୁକ୍ଷୁ ମଣିଷ କେତେ ବାଟ ଦେଇ ତାର କ୍ଷୁଧା ନିବାରଣ କରିପାରେ ସେଗୁଡ଼ାକ ଏଠି ଗପିବା ଅବଶ୍ୟ ଅନାବଶ୍ୟକ, ତଥାପି ମୁଁ ଜାଣେ ମୋ ଉପରେ ଯେତେ ବନ୍ଧୁ ଆଲୋଚନା ଚଳେଇ ବସନ୍ତି ସମସ୍ତଙ୍କର ମାନସିକ ଅବଶେଷ କେତେଟା ନିଷ୍ଟପ୍ତ ଚରିତାର୍ଥ ହୋଇଥାଏ । ମୋ ନିଜ କଥା ମଧ୍ୟ ତାରି ଭିତରେ ବିଶ୍ଳେଷଣ କରିବାରେ ମୁଁ ବାଦ୍ ଦେଉନି କେବେ । ସେହୁ ଆଲୋଚନା ତଳୁ ମୋ ମାନସିକ ତୃପ୍ତିର ଆଉ କେତେଟା ଅହେତୁକ ଖୋରାକ ମଧ୍ୟ ମୋତେ ମିଳିଯାଏ—ସାଇକୋଲଜି ବଡ଼ ଚମତ୍କାର କଥା ସବୁ ଜାଣିବାର ସୁବିଧା ଦିଏ । ସୁନ୍ଦର ସବ୍ଜେକ୍ଟଟିଏ, ବହୁତ କଥା ନିଜ ସମ୍ପର୍କରେ ଜାଣି ହୁଏ ସେଥିରୁ ।

ଇନ୍ଦୁ ଅବାକ୍ ହେଲା ।

ପ୍ରିୟା ଯାର ଭିତରେ ରୀତିମତ ବକ୍ତୃତା ଆରମ୍ଭ କରି ଦେଇଛି । ଲଗାମହୀନ୍ ଘୋଡ଼ା ପରି ତା କଥାର ସ୍ରୁଅ ଛୁଟିଛି, ହୁଏ ତ ତା ପରସ୍ନାଲ ଥିଓରିଟା ଯେମିତି ଏକ୍ସପ୍ଲେନ୍ କରିବାକୁ ଇନ୍ଦୁ ତାକୁ ସୁଯୋଗ ଦେଇଛି ଆଜି—

ଇନ୍ଦୁ କହିଲା—ବଡ଼ ଖୋଲଖୋଲି ତୋର ମତ ଦେଖୁଛି, ମୋ ନୋଟବୁକ୍ଟା ପଢ଼ି ଶାଇ କିନ୍ତୁ ସେଥିଲାଗି ଜୀବନର ପଦେ ପଦେ ଆଜି ପରାଜୟ ସ୍ୱୀକାର କରିବାକୁ ବାଧ ହେଉଛି, ଏମିତି କେତେ ଡେଲିକେଟ୍ କଥା ପଢ଼ିଲେ ମୋ ଭୁଲ୍କୁ କଥା ଆସେନି ଯେମିତି ଘଣ୍ଟାଏ ମାଡ଼ି ମାଡ଼ି ପଡ଼େ ମୋତେ ।

ପ୍ରିୟା ଇନ୍ଦୁ କଥାରେ ଏକମତ ହୋଇ ଆରମ୍ଭ କଲା—ଜଣା, ସେଗୁଡ଼ାକ ମୋତେ ସବୁ ଜଣା । ତା ସେଣ୍ଟିମେଣ୍ଟ ଇତ୍ୟାଦି ଜାଲ ପର କିଛି ଗୋଟାଏ ଖେଳ୍ ଠୋକ୍ କହିଦବାକୁ ମୁଁ ପସନ୍ଦ କରେନା··· ତା ବୋଲି କଲେଜରେ କିଏ କଣ କରୁଚି ନ କରୁଚି ସେ କଥା କଣ ମୋତେ ଅଜଣା ? କଲେଜ ଛାଡ଼ିଲା ପରେ ସେ ସବୁ ଖବର ଆଉ ମିଳୁନି, ତଥାପି କଲେଜ ବେଳର ସବୁ ଖବର ମୋ ପାଖରେ ଅଛି । ଆଚ୍ଛା ଇନ୍ଦୁ, ତୁ କହିଲୁ, ଜଣକୁ ପ୍ରେମ କରିବା ଅଥବା ଭଲ ପାଇବା ଯୁବକଯୁବତୀମାନଙ୍କ ପକ୍ଷରେ ଯେତିକି ସ୍ୱାଭାବିକ ତାଠାରୁ ଆତ୍ମଗୋପନ କରି ନିର୍ବାଦ ମେଷଶାବକ ପରି ନିଜକୁ ପରିଚିତ କରେଇବା କଣ ବେଶି ଅଧିକ ଅସ୍ୱାଭାବିକ ନୁହେଁ ? ଆମ ମଣିଷ ଏଇ ଅସ୍ୱାଭାବିକତାକୁ ଏତେ ଶୃଙ୍ଖଳାବଦ୍ଧ କରି ଚଳନ୍ତି ଯେମିତି ମହୋଦଧିରେ ସୃଷ୍ଟିର ପ୍ରଥମ ତରଙ୍ଗ ଏବେ ବି ମୁଣ୍ଡ ଟେକି ପାରିନି··· ମହୋଦଧିର ବକ୍ଷ ପ୍ରଶାନ୍ତ···ଅଚଞ୍ଚଳ···ଧୀର । ଆଉ ସ୍ୱାଭାବିକତାର ଉନ୍ମେଷରେ ମାନେ କା’ ଭଲ ପାଇବା ଟିକିଏ ପଦାକୁ ଫୁଟି ପଡ଼ିଲେ ଅସହଣୀ ଜନତା ନିର୍ବିଘ୍ନରେ ଈର୍ଷ୍ୟାନ୍ୱିତ ହୋଇ ପଡ଼େ । ବିଶ୍ଳେଷଣ କଲେ ଜଣାପଡ଼େ ବ୍ୟକ୍ତିଗତ ତ୍ରୁଟି କାହାରି ଏଥିରେ କିଛି ନାହିଁ···କେବଳ ଗୋଟାଏ ହୋ ହୋ ସୋ ସୋ—ମାନସିକ ତୃପ୍ତି ପାଇପାରେ । ଆମ ସାଇକୋଲଜି ମଧ୍ୟ କହେ ଅବଚେତନ ମନ-ତଳର ଯୌନବିକୃତିଜନିତ ଈର୍ଷା-ଦ୍ୱେଷ ଅପରର ଅସ୍ତିତ୍ୱସୂଚକ କାର୍ଯ୍ୟକଳାପ ଦେଖିଲେ କାତର ହୋଇ ପଡ଼େ—ବିଫଳତାରେହିଁ ସେ ପାଏ ପରମ ତୃପ୍ତି । ଏଇ ଯୋଡ଼ାଏ ଜିନିଷ···ଖୋଲଖୋଲି କଥା···କଣ ଅଛି ଏଥିରେ ? ତୋର ମନେ ଥିବ ଯେଉଁ ଦିନ ଜମା-ଦାଇ କ୍ୟାସ୍‌କେଟ୍‌ଟାଏ ନେଇ ଆମ ହଷ୍ଟେଲକୁ ଆସିଥିଲେ ? ଝିଅ-ମାନଙ୍କ ଭିତରେ କେତେ ଚୁପ୍‌ଚାପ୍ କଥା ଚାଲିଲା । ଶେଷକୁ ଓ୍ୟାର୍ଡେନ୍

ପର୍ଯ୍ୟନ୍ତ କଥା ଗଲା । ମୋତେ କୈଫିୟତ ଦବାକୁ ପଡଲା । ଭାଇଙ୍କ ପାଖକୁ ଓ୍ୟାର୍ଡେନ୍ ଗୋଟାଏ ଚିଠି ଲେଖିଲେ ମୋ ଚରିତ୍ର ସଂବନ୍ଧରେ, କିନ୍ତୁ ଜାଣୁ ଭାଇ କଣ ଜବାବ ଦେଲେ ? ଭାଇ ସଫା ସଫା ଲେଖି ଦେଲେ—ପ୍ରିୟା ସଂପର୍କରେ ଏତେଟା ସେପିମିଷ୍ଟିକ ଭାବ ପୋଷଣ କରିବା ଆପଣଙ୍କର ଉଚିତ ହେଉନି···ପ୍ରିୟାର ବ୍ୟକ୍ତିସ୍ୱାଧୀନତା ଅଛି । ଆପଣଙ୍କ ହଷ୍ଟେଲର ଆଭ୍ୟନ୍ତରୀଣ ଶୃଙ୍ଖଳା ବ୍ୟାହତ ହେଲେ ଆପଣ ମୋତେ ଲେଖିବେ—

ବେଶ, ସମସ୍ତେ ଚୁପ୍‌ଚାପ୍ ।

ଆମ ଦେଶର ଅଧୋଗାମୀ ସମାଜ ବେଷ୍ଟନୀ ଭିତରେ ଭାଇଙ୍କର ଉଦାର ମତ ମୁଁ ବେଶ ପସନ୍ଦ କରେ । ଗ୍ରାଜୁଏସନ୍ ପରେ ସେମିତି ମୋ ବାହାଘର ଲାଗି ବାପା ଏକା ଜିଦ୍ କଲେ, ଭାଇ ଷ୍ଟେଟ୍‌ଟୋକ୍ ମନା କରି ଦେଲେ । କହିଲେ, ନା ପ୍ରିୟାର ବାହାଘର ହେଇ ପାରିବନି । ଯେ ଯାଏ ବିବାହକୁ ନିଜେ ପସନ୍ଦ କରେ ସେ ଦୋସରା କଥା—ମୋ ମେଣ୍ଟାଲିଟି ତ ଜାଣୁ, ମୁହେଁ ମୁହେଁ ନାହିଁ କରିଦେଲି ।

ଇନ୍ଦୁ ବଡ଼ ତନ୍ମୟପ୍ରାଣରେ ପ୍ରିୟାର ବାର୍ତ୍ତା ଲକ୍ଷ୍ୟ କରୁଥିଲା । କଣ ସେ ପ୍ରିୟା ସାଙ୍ଗରେ କଥା ହେବ ? ଯୁକ୍ତି ତର୍କ କରିବାର ଅବସର ପର୍ଯ୍ୟନ୍ତ ପ୍ରିୟା ତାକୁ ଦଉନି, ଅବିଶ୍ରାମ ଗତିରେ ସେ କହି-ଗଲିଚି···ବାସ୍ତବିକ, ବଡ଼ ଭଲ କରିଚି ପ୍ରିୟା—ସଙ୍କୁଚିତ ମନ ହେଉନି ନିଜକୁ ଅପରାଧୀ ପରି ମଣିଷ ଟିକେତେଦନ ଚଳେଇବ ?

ଇଣ ମନା କରିଦେଲି ତୁ ବିବାହ କରିବୁନି ହୋଇ ?— ଇନ୍ଦୁ ପଚାରିଲା ।

ପ୍ରିୟା କହିଲା—ଆରେ ତଥାପି ପ୍ରଶ୍ନ କରୁ ? ତୁ ନିଜେ ଭାବିକି ଦେଖି, ସୃଷ୍ଟି କହିଲେ ତ କେବଳ ମଣିଷକୁ ବୁଝାଏନି ! ଏଇ ଅଷ୍ଟ୍ରାଲିଆର ଇଉକାଲିପଟାସ ଠାରୁ ଆରମ୍ଭ କରି ପେଙ୍ଗୁଇନ୍, ଜିରାଫ, ବଲ୍‌ଗା, ପଙ୍ଗପାଳ, ଅସରପା, ଗୁରପୋକ ଯାହା କଥା ତୋ ଇଚ୍ଛା ଟିକିଏ ଭାବି ଦେଖ—କିଏ ବାହାଦେଇ ଘର ବାନ୍ଧେ ? ଅପର ସୃଷ୍ଟିଠାରୁ ଉନ୍ନତ ବୋଲି ଏଇ ବଚନ ପଶୁ ମଣିଷ ଗର୍ବ କରେ··· ସେଇ କେବଳ ବିବାହବନ୍ଧନ ରୂପକ କୃତ୍ରିମତାର ଆଶ୍ରୟ ନେଇଛି । କିନ୍ତୁ ଯାର ଲାଭ କ୍ଷତିର ହିସାବ କରି ମଣିଷସମାଜ ରଖିଛି ? ବହୁତ ଲୋକ ଯୁକ୍ତି ବାଢ଼ନ୍ତି—ପାରିବାରିକ ନିର୍ବଳତା, ସନ୍ତାନ-ମମତା, ବାର୍ଦ୍ଧକ୍ୟର ଅସହାୟତା ଦୃଷ୍ଟିରୁ ବିବାହଟା ମଣିଷ-ସମାଜର ଅତି ପ୍ରୟୋଜନୀୟ, କିନ୍ତୁ ଅପର ପକ୍ଷରୁ ଠିକ୍ ଏଇସବୁ ଯୁକ୍ତି ହୋଇ ପାରେ ପାରିବାରିକ ଜଞ୍ଜାଳ, ସନ୍ତାନ ନିପୀଡ଼ନ···ବାର୍ଦ୍ଧକ୍ୟର ଅଶାନ୍ତି କେବଳ ବିବାହ କୃପାରୁ ମଣିଷକୁ ମିଳିଥାଏ । ତା ଛଡ଼ା ବିବାହିତ ମଣିଷ ସ୍ୱାର୍ଥପର ହେବାକୁ ବାଧ୍ୟ ହୁଏ । ଯୌବନର ଗଣ ଭେଦ୍ରକ ମନ ତାର ପରିବାର-ଆବଦ୍ଧ ହୁଏ । ପୁଣି ଅନ୍ୟ ଦିଗରୁ ଦେଖିଲେ ଯୌନ-ତୃପ୍ତି ବିବାହର ମୂଳଧାତୁ, ତାରି ଉପରେ ଯାହା କିଛି ଦୋଷ ବା ଗୁଣ ପ୍ରତ୍ୟୟ ହୋଇଛି । ମାତ୍ର ବିବାହରେ ଯୌନତୃପ୍ତି ସୀମିତ ଆଉ ଅପରିବର୍ତ୍ତନୀୟ ହୋଇ ଉଠେ । ଫଳରେ ବିତୃଷ୍ଣା···ଅସନ୍ତୋଷ···ଅବଶୋଷ୍ ଡିଗ୍ରୀ ପରେ ଡିଗ୍ରୀ ବଢ଼ି ଚାଲେ । ରସଗୋଲା କହ, ମାଂସ କହ କେବଳ ସାମୟିକ ଉତ୍ତେଜନା ଥମେଇ ପାରେ···ସମୟର ଆବର୍ତ୍ତନ ଭିତରେ ପୁଣି ମନ ଚାହେଁ ମୁଢ଼ି ଖାଇବାକୁ । ସୃଷ୍ଟି ଚାହେଁ ନିତ୍ୟ-ନୂତନର ପରିବର୍ତ୍ତନ । ଆମେ କିନ୍ତୁ ବର୍ବରର ତାକୁ ଭୁଲ ଅର୍ଥରେ ବ୍ୟବହାର କରିଥାଉ— ଏଇମିତି ଅନର୍ଗଳ କହି ଚାଲିଥାଏ ପ୍ରିୟା ।

ଇନ୍ଦୁ ବୋକା ବନି ପ୍ରିୟାର ବକ୍ତୃତା ଶୁଣି ଶୁଣି ତାର ଅନୁଗମନ କରୁଥାଏ···ଭାବୁଥାଏ ପ୍ରକୃତରେ ସେ ଭୁଲ କରିଛି । ଆଗରୁ ପ୍ରିୟା ପାଖକୁ ଲେଖିଥିଲେ କେତେ ସୁନ୍ଦର ହୋଇଥାନ୍ତା—ସୃଷ୍ଟିର ଶତ ପ୍ରତିବନ୍ଧକ ଡେଇଁ ଯିବାକୁ ପ୍ରିୟାର ପଦେ ସହାନୁଭୂତିପୂର୍ଣ୍ଣ ଆଶ୍ୱାସନା ତାର ଦରକାର ଥିଲା । ସେ ମୂଳରୁ ଭୁଲ କରି ଦେଇଛି । ବର୍ତ୍ତମାନ ତାକୁ ଲୁଚେଇ ଆଉ କିଛି କରିବା ଲାଭ ନାହିଁ । ପ୍ରିୟା ଯେମିତି ଧୂର୍ତ୍ତ ହୁଏ ତ ସାଙ୍ଗେ ସାଙ୍ଗେ ତା ଉଦ୍ଦେଶ୍ୟଟା ଧରିନେଇ ତାକୁ ମିଛକୁ ଅପଦସ୍ଥ କରି ବସିବ । ନା, ପ୍ରିୟାକୁ କଥା ଲୁଚେଇ କିଛି ଲାଭ ନାହିଁ ।

ସାଂଧ୍ୟ ଭ୍ରମଣ ସାରି ସେମାନେ ଅମଲା କ୍ୱାର୍ଟରସ୍ ପାଖାପାଖି ପହଞ୍ଚି ଯାଇଥିଲେ । ପ୍ରଥମ ଲାଇନର ଶେଷ କ୍ୱାର୍ଟରସ୍‌ରେ ପ୍ରିୟା ରହୁଥିଲା । ଇନ୍ଦୁ ହାତଠାରି କହିଲା—ପ୍ରିୟା, ତୋ ବସା ତ ପାଖ ହୋଇଗଲାଣି । କଥାଖେଳରେ ବାଟ ତକ ଆମର କିମିତି ଶେଷ ହେଲା ଜାଣି ପାରିଲିନି, ଯାହା କହ ସାଂଧ୍ୟ ଭ୍ରମଣଟା ଉପଭୋଗ୍ୟ ହେଲା ଏକା—

ପ୍ରିୟା ଜବାବ ଦେଲା—ହୋଷ୍ଟ କନା, ସବୁ କଥାରେ ତୋର ତ ଗୋଟାଏ ଆପ୍ରିସିଏସନ୍ ଦବା ଦରକାର । ପ୍ରକୃତରେ ବସା ପାଖ ହେଲାଣି ଜାଣି ମୁଁ ଏଇଁ କଥା ବନ୍ଦ କରିଦେଲି, ନ ହେଲେ କ'ଣ କଥା ସରୁଥିଲା ? କିରାଣୀଗୁଡ଼ାକ ବସାବାନ୍ଧି ମଣ୍ଡଚନ୍ତି, କାଲି ସକାଳେ ଯାଇ ଅଫିସରେ ସତ ମିଛ କରି ହଲା କରିବେ ।

ଚିଫ୍ ମନ୍ତ୍ରୀଙ୍କ ପାର୍ଶ୍ୱରିମା ଦଳ୍‌ବଳମାନଙ୍କୁ ଉଠେଇ ଯାଇ ଲୋମ-ନିଘ୍ନ ଘଞ୍ଚ ମାଡ଼ି ଆସୁଥିଲା । ଅଲୋକ ଲୁଟିକା ପରି ସଳଫୁଟା ତର-

ଗୁଡ଼ାକ ଆକାଶ ଉପରକୁ ଉଠି ସାରିଥିଲେ ଅତି ଅସଂଯତ ଅତି ବିଶୃଙ୍ଖଳ ଭାବରେ । ସାନ୍ଧ୍ୟ ବାୟୁର ଶୀତସ୍ପର୍ଶରେ ଦେହ ଥାଙ୍କୁରି ଉଠୁଥିଲା । ପିନ୍ଧିଲା ପୋଷାକଗୁଡ଼ାକ ଓଦାଳିଆ ଲାଗୁଥିଲା । ପ୍ରିୟା କ୍ୱାର୍ଟର୍ସ୍ କମ୍ପାଉଣ୍ଡ ର ସାମନା ଫାଟକ ଖୋଲିଲା । ଦୁଇ ବନ୍ଧୁ ଭିତରକୁ ପଶି ଯାଉ ଯାଉ ପ୍ରିୟା ଫାଟକ ବନ୍ଦ କରିଦେଲା । ତା ପରେ ସେମାନେ ଚାଲିଲେ ଭିତରକୁ ।

ପ୍ରିୟା ।

ସ୍ୱାସ୍ଥ୍ୟ ପ୍ରସାରଣ ଯୋଜନାର ସଂଗଠିକା—

ଛଅ ମାସ ତଳେ ସେ ଏଠି ଜଏନ କରିଚି, ଠିକ୍ ଛଅ ମାସ ତଳେ—ଶିକ୍ଷା ସଂଗଠନର ଦାୟିତ୍ୱ ନେଇ ।

ଇନ୍ଦୁ ।

ତା କଥା ମଧ୍ୟ ଅନୁରୂପ ।

ବିଶ୍ୱବିଦ୍ୟାଳୟର ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରିୟା ଯେତେବେଳେ ଟେକ୍ନିକାଲ ଟ୍ରେନିଙ୍ଗ ପାଇଁ ବାହାରକୁ ଯାଏ, ଇନ୍ଦୁ ଶିଳ୍ପ ଓ ବିକାଶ ଦପ୍ତରରୁ ଗୋଟାଏ ନିଯୁକ୍ତିପତ୍ର ପାଇଲା । ସେଇଦିନୁ ସେ ବିକାଶ ବିଭାଗରେ କାମ କରୁଚି । କଲେଜ ଛାଡ଼ିଲା ପରେ ଦୁଇ ସହପାଠିନୀଙ୍କ ଭିତରେ ଆଉ ସାକ୍ଷାତ ନ ଥିଲା । ପତ୍ରର ଆଦାନ ପ୍ରଦାନ ମଧ୍ୟ କମି ଯାଇଥିଲା ବିଲକୁଲ୍ । ହଠାତ୍ କାଲି ଡାକରୁ ପ୍ରିୟା ଇନ୍ଦୁର କାର୍ଡ ଖଣ୍ଡି ପାଇଥିଲା । ଇନ୍ଦୁ ଲେଖିଥିଲା, ଅଫିସ ଦିଦିନ ଛୁଟି ଅଛି । ସେ ଇଆଡ଼କୁ ଆସି ବୁଲିଯିବ···ଛୁଟିଟା ପ୍ରିୟା ସାଙ୍ଗରେ ଖୁସିରେ କଟିଯିବ । ଆଜି ଦିନ ଗାଡ଼ିରୁ ଇନ୍ଦୁ

ଓହେଲଇଛ । ଦୁଇ ବନ୍ଧୁ ସଞ୍ଜବେଳେ ଠିକଏ ପଦାକୁ ବାହାର ପଡ଼ିଥିଲେ । ତା ଗୃହକର ଙ୍କରୁଥିବା ଝାଉଳ ବର୍ଷପ୍ରରେ ବନ୍ଧୁ ମନରେ ଗୋଟାଏ ମୋଟାମୋଟି ଧାରଣା ଦବାକୁ ପ୍ରିୟ୍ରା ଇନ୍ଦୁକୁ ଧରି ବୁଲି ବାହାରଥିଲ ।

ବସାରେ ପହଞ୍ଚି ପ୍ରିୟ୍ରା କହିଲ—ଅମେ ଗୃଲି ଗୃଲି ବଡ଼ କ୍ଳାନ୍ତ ହୋଇ ପଡ଼ିଚେ, କପେ କପେ ଗୃ' ପିଇଦେଇ ପୁଣି ଗପ ଅରମ୍ଭ କରିଦବା । ଅନେକ ଦିନ ପରେ ଦେଖା, ଅନ୍ତତଃ ଗୁଡ଼ାଏ ଅଲେଚନା ହୋଇଯିବ । ବାସ୍ତବିକ ଇନ୍ଦୁ, ଦୀର୍ଘ ବ୍ୟବଧାନ ପରେ ଇମିତ ବନ୍ଧୁ-ମିଳନ ବଡ଼ ଅଗ୍ରମ ଦିଏ······ ।

ଗୃକରାଣୀ ଲ୍ୟାମ୍ପ ଜାଳି ପ୍ରିୟ୍ରାର ଶୋଇବା କୋଠରୀ ଟେବୁଲ ଉପରେ ଥୋଇଦେଲ । ଦୁଇ ବନ୍ଧୁ ସେଇ କୋଠରୀ ଭିତରକୁ ଗଲେ । ଗଲବେଳେ ପ୍ରିୟ୍ରା ଝାଣ ଗଳାରେ ବରାଦ କଲ—ପାର, ଦି'କପ୍ ଗୃ ପାଇଁ ଠିକଏ ପାଣି ଗରମ କରତ । ଇନ୍ଦୁ ପଗ୍ରିଲ—ହଁ ସବୁ ତ କହିଲୁ ପ୍ରିୟ୍ରା ଗୋଟାଏ କଥା ଶୁଣୁଥିଲି ତୋର ପରା ବାହାଘର ହେଉଛ ?

ପ୍ରିୟ୍ରା—ଆରେ ତୋତେ ତ ପୁରାଣ ପଢ଼େଇ ପୁଣି ମୂଳରୁ ଅରମ୍ଭ କରିବାକୁ କହିଲୁଣି । ମୋ କଥାରୁ କଣ କିଛି ଠଉରେଇ ପାରିଲୁନି ଇନ୍ଦୁ ?

ଇନ୍ଦୁ—ବୁଝିଲି ତ, ତଥାପି କହକରେ ଶୁଣୁଥିଲି ତୁ କୁଆଡ଼େ ଟେ। ଉପର ହାକିମକୁ···ପ୍ରିୟ୍ରା କଥା ଛଡ଼େଇ ନେଇ କହିଲ—ବାହା ହେବାକୁ କହୁଚ—ଏଇଆଠି । ଯାହା କହ ତୁ ଠିକଏ ଭୁଲ୍ ଶୁଣିଛୁ ଇନ୍ଦୁ । କଥାଟା ପୂରା ମିଛ ନୁହେଁ, ତେବେ ବାହା କଥା ତ ମୋତେ

ନୁହେଁ । ଅବଶ୍ୟ ଏତିକି କୁହାଯାଇ ପାରେ ଯେ ଅନ୍ତରିକତାଟା ଟିକିଏ କମିଛି ।

ଇନ୍ଦୁ ଅବାକ୍ ହେଲା । ସବୁ କହିଯାଉଛି ପ୍ରିୟା—ବିକାର ବୋଲି ତା ମନରେ ଟିକିଏ ହେଲେ ତ ନାହିଁ । ତା ପାଖରେ କଥା ଲୁଚେଇ ଲାଭ କଣ ? ବରଂ ସତ କଥାଟା ସେ ପ୍ରିୟାକୁ ଫିଟେଇ କହିଦେବ । ଟିକିଏ ନୁଆଁଣିଆ ଗଳାରେ ଇନ୍ଦୁ ଆରମ୍ଭ କଲା—ପ୍ରିୟା, ଢେପଦ ମନକଥା ତୋତେ କହିବ ବୋଲି ଭରସା ରଖିଛି । କହିବ କହିବ ବୋଲି ଏତେବେଳ ଯାଏ ଜିଭ ନେଉଥିଲା ନ ଥିଲା । କିନ୍ତୁ ବର୍ତ୍ତମାନ କହିବ, କିଛି ମନେ କରିବୁନି ।

ପ୍ରିୟା—ଆରେ କଥାଆଡ଼ୁ ମୋଟେ ନ କହି ଭୂମିକା ଦେବାକୁ ତ ଆରମ୍ଭ କରି ଦେଲୁଣି, କହନା...... ।

ଇନ୍ଦୁ—ବିଭୂତି ବାବୁଙ୍କୁ ତ ତୁ ଜାଣୁ ପ୍ରିୟା ?

ପ୍ରିୟା—ହଁ, କଣ ହେଲା ? ତୁ ତାଙ୍କୁ ପ୍ରେମ କରୁଚୁ, ବିବାହ ଦରକାର ?

ଇନ୍ଦୁ—ବିବାହ ଆଉ ହୋଇ ପାରିବନି, ଉଭୟ ପକ୍ଷ ଅଭିଭାବକଙ୍କ ତୀବ୍ର ପ୍ରତ୍ୟାଖ୍ୟାନ ଫଳରେ ସେ ପ୍ରସ୍ତାବ ବହୁଦୂର ପଛେଇ ଗଲାଣି—

ପ୍ରିୟା—ପିତାମାତାଙ୍କର ବାଧ୍ୟ ସନ୍ତାନ ଦର୍ଶଚି, ଦେଖୁଚି ତମ ଯେପ୍ରକାର ହାର ମେଣ୍ଟାଲିଟି ବଡ଼ ଦୁର୍ବଳ ପଡ଼ିଗଲା...ହେବେ ବର୍ତ୍ତମାନ ପନ୍ଥା ?

ଇନ୍ଦୁ—କିଛି ଠିକ୍ ନାହିଁ ତେବେ ବିଭୂତି ବାବୁ ଆଜି ସନ୍ଧ ଲେଜକାଲରେ ଏଠାକୁ ଆସିବେ...ଆମର ଅଗରୁ କଥାବାର୍ତ୍ତା ହୋଇ

ଯାଇଚ । କେବଳ ଏତେ ଖବର ମୁଁ ତୋତେ ଅଗରୁ ଜଣେଇବାକୁ ଟିକିଏ ସଙ୍କୋଚ ବୋଧ କଲି···

ପ୍ରିୟା ଆନନ୍ଦରେ କରତାଳି ଦେଇ ଉଠିଲା । ଯେପରିକି କଣ ଗୋଟାଏ ହଜିଲା ଜିନିଷ ଖୋଜି ପାଇଲା ସେ । ଇନ୍ଦୁକୁ ଧମକ ଦେଇ ସେ କହିଲା—ଆରେ ଗୁଡ଼୍ । ମନସ୍ତତ୍ତ୍ୱର ଲକ୍ଷଣ ଏଇଟା—ଅସନ୍ତୁନା ବଢ଼ୁଥିବାରୁ, ତାଙ୍କର ଅତଥ୍ୟ ଗ୍ରହଣ କରିବାକୁ ପ୍ରିୟାକୁଟୀର ସଦା ବନ୍ଧୁକ୍ତ···ଏତକ ନା ଆଉ କିଛି ଅଛି । ଇନ୍ଦୁ ହଠାତ୍ ଟିକିଏ ଲାଜେଇ ଦେଖାଗଲା । ପ୍ରିୟା ତା ପିଠିକି ଥାପୁଡ଼େଇ ଥାପୁଡ଼େଇ ପୁଣି କହିଲା—ତୋଣ୍ଟ ଓଁର··ଅନୁଶୋଷ କରିବାର କିଛି କାରଣ ନାହିଁ··· ବରଂ···ଇନ୍ ଦ ସେମ ବୋଟ୍ ମାନେ ଏକା ନାଆରେ ଯାତ୍ରା ନିଶ୍ଚୟ ସୁଖପ୍ରଦ ହେବ । ରମି ଭାଇ,···ସେ ମଧ୍ୟ ଅଜି ରାତି ଗାଡ଼ିରେ ଆସିବେ; ଭାବୁଥିଲି ତୋତେ ସାଙ୍ଗରେ ନେଇ ବସ୍ ଷ୍ଟାଣ୍ଡକୁ ଯିବି ବୋଲି··ଦେଖୁଚ ତୋର ମଧ୍ୟ ସେଠି କାମ—ସାଙ୍ଗ ହୋଇ ଚାଲିବା··ବଡ଼ ଭଲ ହେଲା ଇନ୍ଦୁ, ନଚେତ୍ ଏ ଯେଉଁ ଶୀତ ରାତି ବଡ଼ ନିଘଞ୍ଚିଆ ଫିଲ୍ କରିଥାନ୍ତୁ ତୁ—

ପ୍ରିୟାର ନିର୍ଲଜ୍ଜ ବାକ୍ୟବାଣରେ ଇନ୍ଦୁର ମୁଣ୍ଡ ନଇଁ ନଇଁ ଆସୁଥିଲା ତା ଛଡ଼ା ଆଶଙ୍କା ତାର ଘନୀଭୂତ ଧରି ଆସୁଥିଲା । ରମିବାବୁ ଆସୁଚନ୍ତି···ସେ ମଧ୍ୟ ତା କଥା ଜାଣିବେ···ଛି··· । ରମିବାବୁ, ସମାଜରେ ଯେଉଁ ଲୋକର ଦୁର୍ନାମ ଭରି ରହିଚ, ସେ ଆଜି ଜାଣିବ ଇନ୍ଦୁର ଦୁର୍ବଳତା । କଣ ହେବ ତା ଅବସ୍ଥା କାଲିକି ? ହୁଏତ ଏଇ ବ୍ୟଭିଚାରୀ ରମି କାଲି ଇନ୍ଦୁର ଦ୍ୱାରସ୍ଥ ହେବ ତାର ଦୁର୍ବଳତାର ସୁଯୋଗ ନେଇ, କଣ କରିବ ସେତେବେଳେ ଇନ୍ଦୁ··· ? ପ୍ରିୟା ଇନ୍ଦୁ ମନର ନିସ୍ତବ୍ଧତା ଲକ୍ଷ୍ୟ କଲା । ଆଉ ଲକ୍ଷ୍ୟ କଲା ତାର

ଶାରୀରିକ ନିଷ୍କ୍ରିୟତା । ସେ ହଠାତ୍ କହିଲା—ଅରେ ଏତେ ଅଧୀର ହେଲେ ଚଳିବ, ଗାଡ଼ିବେଳ ତ ଢେର ଡେରିଅଛି । ବର୍ତ୍ତମାନ ଆଉ ସେଥିଲାଗି ଚିନ୍ତା କରିବା ଆଦୌ ଦରକାର ନାହିଁ । ବରଂ ଚା'ଟା ପି ନେଇ ତୁ ତୋର ଶୋଇଲା କୋଠରୀଟା ସଜଡ଼ାସଜଡ଼ି କରିନେ··· ମୁଁ ଟିକିଏ ହାକିମଙ୍କ ଦୁଆରୁ ଫାଇଲ୍‌ଟା କାମ କରେଇ ନେଇ ଆସେ ।

ଅନ୍ୟମନସ୍କ ଭାବରେ ଇନ୍ଦୁ ପଚାରିଲା – ରାତିରେ ହାକିମଙ୍କ ଘରକୁ ଯିବୁ ? ପ୍ରିୟା ଟିକିଏ ହସି ହସି ଉତ୍ତର ଦେଲା – ମିଛ ନୁହେଁ ଇନ୍ଦୁ, କେବଳ ତୁ ଆସିଛୁ ବୋଲି···ନୋହିଲେ ଛୁଟି ଦିନରେ ବି ମଣିଷକୁ ଫୁରସତ ନାହିଁ···ହାକିମ ତ ଡାକୁଛନ୍ତି···ନ ଯାଇ କଣ ମଣିଷର ଆଉ ଚାରା ଅଛି ? ଆମେ ବୁଲି ବାହାରିଲା ବେଳକୁ ସେଇ ଯେଉଁ କାଳିଆ ଟୋକାଟି ଏଠାକୁ ଆସିଥିଲା, ସେ ଆମ ହାକିମଙ୍କ ପିଅନ··· ।

ପ୍ରିୟା ମୁହଁରୁ କଥା ସରି ନ ଥାଏ । ଇନ୍ଦୁ ବଲ ବଲ କରି ତା ମୁହଁକୁ ଚାହିଁ ରହିଥାଏ । ପାର ଦ'କପ ଚା ଆଣି ସେମାନଙ୍କ ସାମନା ଟେବୁଲ ଉପରେ ଥୋଇ ଦେଲା ।



# ଏକ

ସେ ମୋତେ ଚିଠି ଲେଖନ୍ତି······ବାରଂବାର ଲେଖନ୍ତି । ବିଷୟ ବସ୍ତୁରେ ଗୁରୁତ୍ୱ କିଛି ନାହିଁ, ଲେଖାର ଢଙ୍ଗୀ ଅତି ସାଦା—କିନ୍ତୁ ଚିଠିର ମାତ୍ରା ବେଶି···ଏଇ ବର୍ଷେ ଭିତରେ ତାର ସଂଖ୍ୟା କଳ୍ପନାତୀତ ଭାବରେ ବଢ଼ି ଚାଲିଛି । ମନରେ ମୋର କୌତୂହଳ ଉଠିଲା । ନଭେମ୍ବର ମାସର ଚିଠିଗୁଡ଼ାକ ଏକାଠି କରି ଗଣିବସିଲି—ଅଠେଇଶ ଖଣ୍ଡ । ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ ଏତେଗୁଡ଼ାଏ ଚିଠି ବିନିମୟ ସମ୍ଭବପର କି ନା ସେଇଟା ଗବେଷଣାର ବିଷୟ । ସେ କିନ୍ତୁ ଲେଖୁଚନ୍ତି ।

ଅଧ୍ୟାପକ ଜୀବନର କେତେଟା ମାସ ଅତିବାହିତ ହେଲା ପରେ ତାଙ୍କୁ କାହିଁକି ଏ ଚିଠିଲେଖା ବେମାରି ଏତେ ଘାରିଛି ସେ ବିଷୟରେ ମୁଁ ଅନେକ ବେଳେ ଚିନ୍ତା କରେ—କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚିପାରେ ନା । ପ୍ରଥମେ ଠିକ୍ କରିଥିଲି ଏ ପତ୍ର ପ୍ରେରଣ କେବଳ ମୋତେ ଗୋଟାଏ ରୀତିମତ ଅପମାନ ଦବା ଉଦ୍ଦେଶ୍ୟ ଉପରେ ପର୍ଯ୍ୟବେଶିତ—ମୋର ଅଯୋଗ୍ୟତା ଉପରେ ଏଇଟା ଅତ୍ୟାଗ୍ରୁର··· ନିର୍ମମ ଉପହାସ । ବନ୍ଧୁ ସଂଖୋଳା ପରିବର୍ତ୍ତେ ବନ୍ଧୁତ୍ୱର ଅବମାନନା-ପାଇଁ ଏ ଗୋଟାଏ ପ୍ରଚ୍ଛନ୍ନ ଷଡ଼ଯନ୍ତ୍ର । ସେଥିଲାଗି ପ୍ରଥମେ ପ୍ରଥମେ ଚିଠିଗୁଡ଼ାକ ପଢ଼ିବାକୁ ଆଦୌ ମୋର ଆଗ୍ରହ ଆସେନି—

ତା ଛଡ଼ା ସେମିତି କିଛି ମନମତାଣିଆ ଭାବ ବା ଭାଷା ସେ ଚିଠିରେ ନ ଥାଏ । ଅତି ସାଦା, ଅତି ଛୋଟ, ଅଧିକାଂଶ ଚିଠି ପୋଷ୍ଟ କାର୍ଡ଼ରେ ଲେଖା । ସାର ମର୍ମ—"ମୁଁ ଭଲ ଅଛି, କେବେ ଏଆଡ଼କୁ ଟିକିଏ ଆସି ବୁଲିଯାନ୍ତୁ । ଆପଣଙ୍କ ଖବର ଲେଖିବେ ।" ମନେ

ମନେ ଭାବେ ନିଜ ଧନମାନର ପ୍ୟାରେଡ଼୍‌ଟାଏ ଅନ୍ତତଃ ମୋ ସାମନାରେ କରେଇନବାକୁ ବନ୍ଧୁ ଉତ୍କଣ୍ଠିତ ନିଶ୍ଚୟ । କିନ୍ତୁ ପରେ ଦେଖିଲି ମୋର ଭାବନା ପୁରାପୁରି ଭୁଲ୍ । ସମୟ ଆଗେଇ ଚାଲିଥାଏ । ସ୍ମୃତି ଭିତରେ ମୁଁ ପୁରାପୁରି ମୋର ମତ ବଦଳେଇ ସାରିଲିଣି···ଅଗରୁ ମାସକ ମଧ୍ୟରେ ଅତି ଜୋରରେ ଚିଠି ଫୋପଡ଼ା ରକମର ଦୁଇ ତିନି ଖଣ୍ଡ ଚିଠି ମୁଁ ଲେଖିଥିଲି । ଏବେ କିନ୍ତୁ ତାର ପରିବର୍ତ୍ତନ ହେଲଣି । ପାଞ୍ଚ ସାତ ଖଣ୍ଡ ଚିଠି ନ ଲେଖି ମୁଁ ରହିପାରୁନି ।

ମୋର ଭାବନା, ଦୃଷ୍ଟିଭଙ୍ଗୀ, ବୋଧଶୀଳତା ଟିକିଏ ଉନ୍ନତ ମାର୍ଗକୁ ଆସିଲା ପରେ ମୁଁ ମନେ ମନେ କିଣ ଗୋଟାଏ ଅନ୍ୟ କଥା ଭାବି ବସିଲିଣି । ଯାହାହେଉ ବନ୍ଧୁଙ୍କର ଚିଠି ଅର୍ଥହୀନ ନୁହେଁ······ ଅଥବା ମୋ ପ୍ରତି ଆକ୍ଷେପପୂର୍ଣ୍ଣ ନୁହେଁ, ଏଇଟା ପରିଷ୍କାର ଜଣାପଡ଼ି ଗଲଣି । ଏଥିରକ ଚିଠିଖଣ୍ଡିକ ଯେତେ ଛୋଟ ହେଲେ ମଧ୍ୟ ତାର ନିଗୂଢ଼ତମ ନିବେଦନ ନିଶ୍ଚୟ ଗୁରୁ-ରହସ୍ୟ ପୂର୍ଣ୍ଣ, ଏ ବିଷୟରେ ମୁଁ ଏକରକମ ନିଶ୍ଚିତ ହୋଇସାରିଲିଣି । ତଥାପି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ କଣ ସେ କଥା ମୁଁ ଅନୁମାନ କରି ପାରେନି । କିନ୍ତୁ ଅନୁଭବ କରେ— ଚିଠିର ପ୍ରତିଟି ଅକ୍ଷର ଯେମିତି ଗୋଟି ଗୋଟି ହୋଇ କୌଣସି ନା କୌଣସି ତାତ୍ପର୍ଯ୍ୟପୂର୍ଣ୍ଣ ଖବର କହୁଚି । କଲେଜର ଅଧ୍ୟାପକ ଜଣେ ଏପରି କଣ ଚିଠି ଲେଖୁଚନ୍ତି ? ସେଥିପାଇଁ ଅନେକବେଳେ ଆଶ୍ଚର୍ଯ୍ୟ ହୁଏ—ଚିଠିର ମର୍ମ ଅନେକବେଳେ ପ୍ରେରକ ପ୍ରାଣର ବ୍ୟାକୁଳତା, ଅସହାୟତା, ହୀନତା ବେଶ୍ ସୁଚାଉଥାଏ । ଆତ୍ମଗୋପନର ଅଭିଳାଷ ଅବଶ୍ୟ କୌଣସି ଚିଠିରେ ନ ଥାଏ···ତଥାପି ପ୍ରକାଶଭଙ୍ଗୀ ଗୋଟାଏ ବିଚିତ୍ର ଧରଣର । ବୋଧହୁଏ ବିନା ଭୂମିକାରେ···ବିନା ସାକ୍ଷାତରେ ବିଷୟବସ୍ତୁର ଅବତାରଣା କରିବାକୁ ସେ ପସନ୍ଦ କରନ୍ତି ନି !

ଦେଉଳ ଦପ୍ତରରେ ଗୃହକାର୍ଯ୍ୟ କଲାପରେ ସମୟର ଯେ ଗୋଟାଏ ଦାମ୍ ଅଛି ସେଇଟା ମୁଁ ଭୁଲି ଯିବାକୁ ଆରମ୍ଭ କରିଦେଲେଣି । କାମର ପ୍ରାଚୁର୍ଯ୍ୟ କମା ନାହିଁ···ଦାୟିତ୍ୱ କିନ୍ତୁ ଅଦୌ ଜଣା ନୁହେଁ । ରାତି ନଅଟାହୁଁ ପଣ୍ଡା, ହେମଲ ସେବକ ସମସ୍ତଙ୍କର ଆପତ୍ତି । କେଉଁ ଠାକୁରଙ୍କର କାଲି ପର୍ବ ପାଇଁ ଘଣ୍ଟ କଟର ଗଢଣି ଦେଇ ନାହିଁ ତ କେଉଁ ଠାକୁର ମନ୍ଦିରରୁ କବାଟଭଙ୍ଗି ଯାଇଥିବାରୁ ଲବଡ଼ କୁକୁର ଦର୍ଶଙ୍କ ପାଖେ ପଶୁଚନ୍ତି । ସର୍ବସାଧାରଣଙ୍କର ଆପତ୍ତି ବି ଥାଏ—ପଣ୍ଡାମାନେ ଠିକ୍ ସମୟରେ ଭୋଗ କରୁନାହାନ୍ତି । ସଂଜରେ ଠାକୁରଙ୍କର ମନ୍ଦିରରେ ବେଶିସମୟ ପାଇଁ ଘଣ୍ଟ ବାଜୁନି—ଭୋଗ-ଗୁଡ଼ାକ ଏବେ ଅଇ ଅଗ ଭଲ ଭଲ ହଉନି । ଯେତେଯେବୁ କୋଚଟ କାରବାର ସେଗୁଡ଼ାକ ମୋ ଗୃହକାର୍ଯ୍ୟର କାମ—ତଥାପି କରେ, ଯେତେ ହୀନମାନିଆ ହେଲେ ବି ବେକାର ତାଲିକାରୁ ନାମଟା କଟିଚି—ଭତ୍ତା ପଛକୁ ଥାଉ, ଦରମା ମୁଠାକତ ମାସ ଶେଷରେ ଅସେ । ଜଣା-ଅଧିକେ କଂକାଳଗୁଡ଼ାକ ଟିକିଏ କମେଇଦେଇ ଦୋଳ-ପୂନିଅଁ ପରେ ପରେ ଧାଁ ଦାନ ଛୁଟି ନେଲି ।

## ଦୁଇ

ସେଦିନ ସୋମବାର ଥାଏ । ମୁଁ ପଢ଼ୁଥିଲି ବେଳକୁ କଲେଜ ବେଳ । ସୁତରାଂ ବସାରେ ବନ୍ଧୁ ଯେ ନିଶ୍ଚୟ ନ ଥିବେ ଏତିକ ଜାଣି ମଧ୍ୟ ମୁଁ ତାଙ୍କ ବସାରେ ଯାଇ ପହଞ୍ଚିଲି । ପୂଜାରୀ ଟୋକାଟା ଭିତରେ ରଣ କରୁଥିଲି, ମୁଁ କବାଟରେ ହାତ ମାରିଲି କ୍ଷଣି ସେ କବାଟ ଫିଟେଇ ଦେଲା । ଭିତରକୁ ପଶୁ ପଶୁ ଟିକିଏ ଅପ୍ରାକୃତିକ ଗଳାରେ ତାଙ୍କୁ ପଚାରିଲି କିରେ - ବାବୁ କାହାନ୍ତି ?

କଲେଜ ଯାଇଚନ୍ତି—ସେ ଉତ୍ତର ଦେଲା ।

ଅଚ୍ଛା—ମୁଁ କହିଲି, ଯେମିତ ମୋର ତାଙ୍କୁ ପଗ୍ଚରିବାର ପ୍ରଶ୍ନ ଆଉ ନଥିଲା । ସେ କିନ୍ତୁ ଓଲଟା ମୋତେ ପ୍ରଶ୍ନ କରିବାକୁ ଆରମ୍ଭ କଲା—

ତମେ କିଏ ବାବୁ ?

ମୁଁ······ମୁଁ ତୋ ବାବୁ ବଦଳାରେ ଏ କଲେଜକୁ ଆସିଚି, ତୋ ବାବୁଙ୍କର ଏଠୁ ବଦଳି ହୋଇଯିବ—ଏତିକି ମିଛରେ କହିଲି ।

ଅନେକ ହତାଶାର ଗାଢ଼ ଟିକିଏ ବି ପିଲା ମୁହଁରେ ଦେଖି-ପାରିଲିନି । ସେ ବରଂ ଅଟକିଲା ଏବଂ କରୁଣ କଣ୍ଠରେ କହିଲା—

ତମେ ଏଇଠି ରହିବ ବାବୁ—ମୋତେ ରଖିବ ? ବିସ୍ମୟ ଓ କୌତୂହଳ ମୋ ମନରେ ଟିକିଏ ବଢ଼ିଲା । ରାଗ ମଧ୍ୟ ହେଲା । ତଥାପି କଥା କଣ ଜାଣିବାକୁ ମୋର ବଡ଼ ଇଚ୍ଛା ହେଲା—ମୁଁ ତାକୁ ପ୍ରଶ୍ନ କଲି - କାହିଁକି, ତୋ ବାବୁ ସାଙ୍ଗରେ ଯିବୁନି ?

ନା ନା ବାବୁ, ମୁଁ ମରିଯିବି ମାଡ଼ ଖାଇ ଖାଇ···ଆଉ ତାଙ୍କ ସାଙ୍ଗରେ କୁଆଡ଼େ ଯିବିନି—ମୋର ବୋପା ମା କେହି ନାହିଁ ବାବୁ, ଘର ଗଂଜାମରେ—ବାବୁ ମୋତେ ମାଡ଼ ଦଉଚନ୍ତି, ଖାଲି ରାଗ ହଉଚନ୍ତି – ମୁଁ ଆଉ ତାଙ୍କ ସାଙ୍ଗରେ ଜମା ଯିବିନି ।

ବିଶ୍ୱାସ କରିପାରିଲିନି ତା କଥା—ନଅ ଦଶ ବର୍ଷର ନିରୀହ ଛୋଟ ପିଲାଟାଏ କଣ କହୁଚି ! ବାବୁ ତାକୁ ରାଗ ହଉଚନ୍ତି ! ! ମିଛ ବା ସେ କାହିଁକି କହିବ ? ତା ଛଡ଼ା ମୋ ପରି ଜଣେ ଅତି ଅପରିଚିତ ଲୋକ ପାଖରେ ଛୋଟ ପିଲାଟା ଏମିତି କହୁଚି କାହିଁକି ? ହୁଏତ ସେ ଜାଣେନି ତା ବାବୁ ମୋର ଅତି ଆପଣାର – ତଥାପି

ଏଇ ପ୍ରଥମ ସାକ୍ଷାତରେ ସେ ଏତେ ବଡ଼ ଅଭିଯୋଗ ଅଗତ କରୁଚ କଣ ମିଛରେ ?—ବୋଧହୁଏ ନୁହେଁ । ତଥ୍ୟ-ସନ୍ଧିତ୍ସୁ ମନ ମୋର ଗବେଷଣା ଲାଗି ଅଧୀର ହୋଇ ଉଠିଲା । ବୁଝିଲି ଏ୍ୱାକୁଇ ଉପାଦାନ କର ଢାମର ଖୁବ ଦେବ । ତାପରେ ପଢ଼ିବ ମଣିଷ ମନର ଇତହାସ ।

କରେ, ବାବୁ ନାଁରେ ମିଛ କହୁଚୁ··· ରହ ରହ ତୋ ବାବୁ ଅସିଲେ ଏ ସବୁ କହି ଦେବି—ମୁଁ କହିଲି ।

ମୁଁ ମାଡ଼ ଖାଇ ଖାଇ ମରିଯିବ ବାବୁ—ବାବୁ ଶୁଣିଲେ ମୋତେ ବାଡ଼େଇ ପକାଇବେ, ଅଜ୍ଞା । ତମ ଗୋଡ଼ ଧରୁଚି ବାବୁ··· କିଛି କହିବନି—ହଠାତ୍ ମୋ ଗୋଡ଼ ପାଖରେ ବସିପଡ଼ି ଗୋଡ଼ ଦୁଇଟାକୁ ଯାବୁଡ଼ି ଧରିଲା, ତା ଆଖିର ଦୁଇ ଟନ ଟୋପା ଉଷୁମ ଲୁହ ମୋ ଗୋଡ଼ ଉପରେ ଖସି ପଡ଼ିଲା । ମୁଁ ଚମକି ପଡ଼ିଲି । ଦୁଇ ହାତରେ ତାକୁ ଗୋଡ଼ ପାଖରୁ ଉଠାଇ ଆଣିଲି । ସେ କାନ୍ଦୁଥାଏ, ମନକଥା ଗୁପ୍ତରଖି କହିଲି—ଅଚ୍ଛା ଅଚ୍ଛା, ମୁଁ ବାବୁଙ୍କୁ କିଛି କହିବନି । ତୋତେ ରଖିବ, ତୋ ନାଁ ଟା ଏତେବେଳଯାଏ କହିଲୁନି !

ମୋ ନାଁ ବାବୁଲି ଆଜ୍ଞା ସେ କହିଲା ।

ସତ କହିବୁ ବାବୁଲି, ତୋ ବାବୁ ତୋତେ କାହିଁକି ମାରନ୍ତି ?—

ମୋର କିଛି ଦୋଷ ନାହିଁ ଅଜ୍ଞା—କାହିଁକି ବାବୁ ମୋତେ ମାରନ୍ତି ମୁଁ କହି ପାରିବନି । ଦିନେ ଦିନେ ବାବୁ ମୋତେ ବଡ଼ ଆଦର କରନ୍ତି । ଜଳଖିଆ ଖାଇବାକୁ ବକ୍‌ସିସ୍ ବି ଦିଅନ୍ତି । ଆଜ

ଧନେ ଦନେ ଇମିତ ଝିଟିଉ ଯାଅନ୍ତି···ଖଟ ଉପରେ ଶୋଇଥାଆନ୍ତି, ଖାଇବାକୁ ଡାକିଲେ ମତେ ମନଇଚ୍ଛା ଗାଳି ଦଅନ୍ତି—ଧନେ ଧନେ ଛାତିଆଳି ଚୋପାଢ଼ି ମୋର କାନ ମୋଡ଼ି ଦଅନ୍ତି । ମୋର କିଛି ଦୋଷ ନାହିଁ ବାବୁ ।

ହୁଁ,—ସଂକ୍ଷେପରେ ଗୋଟାଏ ବିଜ୍ଞଜନୋଚିତ ଉତ୍ତର ଦେଲି । ବାବୁଲ ଭାବୁଥାଏ ସତେ ଅବା ମୁଁ ତାର ଅଭିଯୁକ୍ତ ବାବୁଙ୍କ ଦୋଷ ବିଚାର କରୁଚି । ସେ ଆହୁରି କହିଚାଲିଲା—

ସେ ଦିନ ଗୋଟାଏ ବତାଫାଳିଆରେ ବାଡ଼େଇ ବାଡ଼େଇ ବାବୁ ମୋତେ ଘର ଭିତରେ କବାଟ ବନ୍ଦ କରିଦେଲେ । ସେଦିନ ମୋର ଦୋଷ ଥିଲା ବାବୁ—ମୁଁ ସେଦିନ ସବୁଠୁ ବେଶି ମାଡ଼ ଖାଇଥିଲି ।

ଦୋଷ ଯଦି କରିଚୁ ତେବେ ଦଣ୍ଡ ତୋର ପାଇବା ଉଚିତ—ମୁଁ କହିଲି ।

ନା ବାବୁ, ମୂର୍ଖଟାଏ ମୁଁ—ପାଠ ମୋତେ ଜମା ଆସେନି, ବାବୁଙ୍କ ଚିଠି ଅଦଳ ବଦଳ କଲି ବୋଲି—ବାବୁଲର ଅର୍ଦ୍ଧସମାପ୍ତ ବାକ୍ୟ ସେଇଠାରେ ରହିଗଲା ।

ହଠାତ୍ ମୁଁ ପଚାରିଲି—ଚିଠି ?

ଅଜ୍ଞା, ସେଇ ଯେଉଁ କୋଠାଟା ବାଁ ପଟକୁ ଦିଶୁଚି, ସେଇଠିକି ବାବୁ ମୋ ହାତରେ ଖଣ୍ଡେ ଚିଠି ଦେଇଥିଲେ···ଆଉଖଣ୍ଡେ ଡାକଘରେ ପକାଇବାକୁ—ମୁଁ ତାକୁ ଓଲଟ ପାଲଟ କରିଦେଲି ବୋଲି ବାବୁ······ବାବୁଲ କହିଲା ।

କୋଠାଘରେ ? କିଏ ସେଠି ଥାଏ ?

କଲିକତାର ବଡ଼ ଜମିଦାରଟିଙ୍କ ଘର ସେଇଟା—ତାଙ୍କ ଝିଅ କଲେଜରେ ପଢ଼ନ୍ତି—

ତାଙ୍କୁ ତୁ ନେଇ ଚିଠି ଦଉ ?

ଆଜ୍ଞା—ବାବୁ ମୋତେ ମନା କରିଥିଲେ କାହାକୁ କହିବାକୁ, ଜାଣିଲେ ମୋତେ ମାରି ପକାଇବେ···ଶଙ୍କିତ ଗଳା ତାର କ୍ଷୀଣତର ହୋଇଉଠିଲା । ଅଭୟ ଦେଇ ମୁଁ କହିଲି—ଅରେ, ଥରେ ସିନା ମନାକଲି ମୁଁ ବାବୁଙ୍କୁ ଏକଥା କହିବନି । ଆଉ ବାବୁ ଜାଣିବେ କିମିତି ?

କରୁଣ ଭୋଳା ଯୋଡ଼କ ତାର ମୋର ମୁହଁ ଉପରେ ନିଶ୍ଚଳ ହୋଇ ଲାଗିଯାଇଥାଏ ।

ଆଉ ଠିଆ ହେଲୁ କାହିଁକି ବାବୁଲି—ରନ୍ଧାବଢ଼ା ଆରମ୍ଭକର, ନଇଲେ ବାବୁ ଆସିଲେ ପୁଣି ମାରିବେ—ମୁଁ କହିଲି ।

ଜବାବ ନ ଦେଇ ସେ ରୋଷେଇଘର ଆଡ଼େ ଧୀରେ ଧୀରେ ଗୁଞ୍ଜିଗଲା ।

ଚାରି

ଦିନ ଦୁଇଟା କିମିତି କେତେବେଳେ କଟିଗଲା ଜାଣି ହେଲାନି ଜମା—ଆସିବା ବେଳଯାଏ କିଛି ନ ଜାଣିଲା ପରି ଅଭିନୟ କରି କରି ସବୁ କଥା ଅସୂଲ କରିବା ମୋର କାମ ବୋଲି ଧରି ନେଇଥିଲି । ମାଧ ଭିତରେ ସବୁ ଶୁଣିଲିଣି, ସବୁ ଦେଖିଲିଣି । ନମ୍ବରଟିଆଲ ଲ୍ଲାସର ପଢ଼ାଲି ଚକ୍ଷୁମିଳନଠାରୁ ଆରମ୍ଭ କରି ପରୀକ୍ଷା

ହଲ୍‌ର ଜବରଦସ୍ତି ପତ୍ରପ୍ରେରଣ ପର୍ଯ୍ୟନ୍ତ ସବୁ ଖବର ବନ୍ଧୁ ଦଫା ଦଫା କରି ବଖାଣି ସାରିଲେଣି । ବେଶ ଭଲ ଲାଗୁଥାଏ··· ଗପ ନୁହେଁ ବୋଲି ଜାଣିଲେ ମଧ୍ୟ ବେଶ୍ ରୋମାଣ୍ଟିକ ଜଣାପଡ଼ୁଥାଏ । ଯୌନ ବିକୃତି ବୋଲି ଅନୁମାନ କଲି, କିନ୍ତୁ ଆଗ୍ରହ ରୋକି ନ ପାରି ପଚାରିଲି—ଚିଠି ପତ୍ରର କାରବାର ହେଉଥିବ······ଦେଖିବାକୁ ଅନୁମତି ମିଳିପାରେ ? ବିନା ଦ୍ୱିଧାରେ ବନ୍ଧୁ ସୁଟ୍‌କେଶଟାଏ ଖୋଲି ମୋ ଆଗରେ ଥୋଇଦେଲେ । ପ୍ରତି ପତ୍ରର ନକଲ ତା'ର ଉତ୍ତର ସଙ୍ଗେ ମିଶି ଗୋଟାଏ ବିରାଟ ଫାଇଲ ସୃଷ୍ଟି କରିଛି । ଯେ କୌଣସି ସରକାରୀ ଫାଇଲଠାରୁ ବହୁତ ବଡ଼ । ସୁଟ୍‌କେଶଟା ଚିଠିରେ ପୂରିଛି । ହସ ଲାଗିଲା । କହିଲି—ଏତେ ରେକର୍ଡ଼ପତ୍ର ଥାଇ ମୋତେ ଆଉ ଓକିଲାତି କରିବାକୁ ନିମନ୍ତ୍ରଣ କରିବାର କିଛି ଦରକାର ତ ନାହିଁ ଦେଖୁଛି !

ଅପଣ ଭୁଲ୍ ବୁଝୁଛନ୍ତି—ସେ—କହିଲେ—

ଏଇସବୁ ସତ୍ତ୍ୱେ ଝରଣା ଗୁହେଁ ଆମର ବିବାହ ହବ ତାର ଅଭିଭାବକଙ୍କର ସ୍ୱୀକୃତି ନେଇ ।

ହଠାତ୍ ମୋ ପାଟିରୁ ବାହାରି ପଡ଼ିଲା—କି ଅଶ୍ଚର୍ଯ୍ୟ ଯୁକ୍ତି ଝରଣା ଦେବୀଙ୍କର—ବିନା ଚୁକ୍ତିରେ ତାଙ୍କ ପ୍ରେମ ପୂର୍ଣ୍ଣାଙ୍ଗପ୍ରାପ୍ତି ହୋଇପାରେନା—କଣ୍ଡିସନାଲ୍ ଲଭ୍‌ର ଏଇ ପ୍ରଥମ ଉଦାହରଣ ପାଇଲି ।

କଣ କହୁଛନ୍ତି ଅପଣ ? ସବୁଥିରେ ଏମିତି ଖିଆଲିଆ ଉତ୍ତର ଦେଇ କଥାବାର୍ତ୍ତାକୁ ଅପଣ ଜୀବନ୍ତ କରୁଛନ୍ତି ସିନା କିନ୍ତୁ ମୋ କଥା ତ ଜମା ବୁଝୁ ନାହାନ୍ତି—ବନ୍ଧୁ କହିଲେ ।

ଆପଣଙ୍କ କଥା ? ଅପଣଙ୍କ ଚିଠି ପାଇ ମୁଁ ଏତେ ବାଟ ଧାଇଁ ଅସିଚି, ଅଉ ଅପଣଙ୍କ କଥା ବୁଝୁନି—ବରଂ ସ୍ୱାର୍ଥହାନି ଅଶଙ୍କାରେ ଅପଣ ମୋତେ ଗ୍ରହଣ କରିବାକୁ ଶଙ୍କିତ ହେଉଛି ।—ମୁଁ ସଫା ସଫା ବତେଇଲି ।

ମୁଁ କଣ କହୁଛନ୍ତି ?—ବନ୍ଧୁ ପଚାରିଲେ ।

ମୁଁ, ମୁଁ କହୁଚି ପ୍ରେମ···ବିବାହ···ସ୍ୱୀକୃତି ଏ ସବୁ ନେଇ ଅପଣ ଯେଉଁ ନିର୍ଭୁଲର ନକ୍ସା ଆଣି ମୋ ଆଗରେ ଥୋଇଲେଣି, ସେଥିଲାଗି ମୋତେ ସ୍ୱତନ୍ତ୍ର କ୍ୟାମିତି ବହି ଧରି ଅଙ୍କନ କରିବାକୁ ପଡ଼ିବ—ମାପଚୁପ୍ ପରେ ଫଳାଫଳ ଅପଣ ପାଇବେ···ଟିକିଏ ଡେରି ହେବ । ଅପଣ ଅପେକ୍ଷା କରନ୍ତୁ । ବର୍ତ୍ତମାନ ଗାଡ଼ିବେଳ ହେଲାଣି, ମୁଁ ଯିବି—ବନ୍ଧୁ ଠିଆ ହେଲି ।

ହଉ, ଆପଣଙ୍କ ଇଚ୍ଛା । ଅଚ୍ଛା ବାବୁଲି, ଟିକିଏ ଗୁ ବସେଇଦିଅ, ବାବୁ ଖାଇ ଷ୍ଟେସନକୁ ଯିବେ—ବନ୍ଧୁ କହିଲେ ।

ହଁ, ଗୋଟେ ଭଲ କଥା ମନେ ପଡ଼ୁଚି—କହିବି କହିବି ବୋଲି ଭୁଲି ଯାଇଥିଲି- ମୋତେ ଗୋଟିଏ ଜିନିଷ ଆପଣଙ୍କୁ ଦେବାକୁ ପଡ଼ିବ—ମୁଁ କହିଲି ।

ବନ୍ଧୁ ଭୂମିକାରେ ଅପଣ ବର ମାଗି ପାରନ୍ତି, ସତ୍ୟବଦ୍ଧ କରାଇବା ନିହାତି ନିଷ୍ପ୍ରୟୋଜନ ।—ବନ୍ଧୁ ଉତ୍ତର ଦେଲେ ।

ପ୍ରକୃତରେ ଗୃହକରବାକର ଅଭାବରେ ବଡ଼ ହଇରାଣ ହଉଚି ···ବାବୁଲିଟିକୁ ମୋ ପାଖରେ ରହିବାକୁ ଛାଡ଼ନ୍ତୁ—ଅପଣ ଅଉ ଗୋଟିଏ ଖୋଜି ନେବେ ।—ଏତିକିରେ ମୋର ମାଗୁଣି ଅଗତ କଲି ।

ହଠାତ୍ ଲକ୍ଷ୍ୟ କଲି, ଅସ୍ୱାଭାବିକ ଭାବରେ ବନ୍ଧୁଙ୍କର ମୁହଁଟା ଶେତା ପଡ଼ିଗଲା । ବଡ଼ ନମ୍ର ସ୍ୱରରେ ସେ କହିଲେ—ଅନ୍ୟ ଗୋଟିଏ ପିଲା ଆପଣଙ୍କ ପାଇଁ କାନ୍ଦିଦେଲେ କଣ କିଛି କ୍ଷତି ହେବ ?

ସତ୍ୟଭଙ୍ଗ କରୁଚ ରାଜନ୍ ?-- ପ୍ରଶ୍ନ ମୋର ପରିହାସ ମିଶା ।

ନା ଭାଇ, ଭୁଲି ଯାଇଚ କହିବାକୁ, ବାବୁଲି ବିନା ମୋ ଜୀବନ ଅତ୍ୟନ୍ତ ଜଟିଳ ହୋଇ ଉଠିବ···ବାବୁଲି ଚାକର ନୁହେଁ··· ଭାଇ ନୁହେଁ ···ତା'ଠାରୁ ବିଶ୍ୱସ୍ତ···ଅତି ଆପଣାର ମୋର । ତାର ହାତରେ ମନର ଗୋପନ ପୀଡ଼ା, ସୁପ୍ତ ଆଶା···ସେଇ କୋଠାଠାରୁ ଏଇ କୁଡ଼ିଆ ଭିତରେ ସବୁବେଳେ ଲୁଚକାଳି ଖେଳୁଥାଏ, ତାକୁ ଛାଡ଼ି ମୁଁ କିମିତି ବଞ୍ଚିବି ? ସେ ରାଜପ୍ରାଙ୍ଗଣକୁ ମୋ ମନକଥା କିଏ ନେଇଯିବ ? - ବନ୍ଧୁଙ୍କର ସ୍ୱର ମିନତିଭରା ।

ସତ୍ୟଭଙ୍ଗ କଲି କିନ୍ତୁ ରଙ୍ଗ - ଥଟ୍ଟାରେ ଥଟ୍ଟାରେ ମୁଁ ପୁଣି କହିଲି ।

କ୍ଷମାକର ଭାଇ !—ଏତିକି ଛଡ଼ା ବନ୍ଧୁଙ୍କର ଯେମିତି ଆଉ କିଛି କହିବାର ନ ଥିଲା ।

ଛି ଛି ଏତିକି ଦୁର୍ବଳ ଆପଣ ? ସ୍ୱାର୍ଥର ଅନ୍ଧକାର ଆପଣଙ୍କୁ ଅନ୍ଧ କରିନି, ଯୌନ ବୁଭୁକ୍ଷା କିନ୍ତୁ ପାଗଳ କରିଚି ଆପଣଙ୍କୁ - ବାବୁଲିର ଦୌତ୍ୟ ଆପଣଙ୍କ ଜୀବନରେ ଯେ କେତେ ଦରକାରୀ ଆପଣ ସେ କଥା ବେଶ୍ ବୁଝିଛନ୍ତି, ମାତ୍ର ତା ପାଖରେ ତା ମନ ତା ଜୀବନର ଦାମ୍ ଅଛି । ସେଥିପାଇଁ ତ ଆପଣ କେବେ ଝିଅଲ

କରନ୍ତୁନା । ଶ୍ଳେଟ ପିଲଟାଏ ସେ···ଅପଣଙ୍କ ପାଖରେ ଗୃହକର୍ମ କରେ ପେଟପାଇଁ···ତା ବୋଲି ଅପଣଙ୍କ ମାନସିକ ଦୁଶ୍ଚିନ୍ତା···ବିଫଳତା ···ଯୌନ ବିକୃତ ସନ୍ତୁଷ୍ଟିପାଇଁ ବାବୁଲା ହେବ ଅସ୍ତ୍ର ! ଛୁଆଟା ଉପରେ ସ୍ୱେଚ୍ଛାମତ ମାଡ଼ଗାଳି ଅରମ୍ଭ କରି ଆପଣ ପାଉଛନ୍ତି ଶାନ୍ତି··· ଆଉ ତାକୁ ଛାଡ଼ିବାକୁ ନାରାଜ—ବାବୁଲାକୁ ମାରି ତାର ଜୀବନ ପର୍ଯ୍ୟନ୍ତ ନେଲେ ମଧ୍ୟ ଆପଣଙ୍କର କାମନା ସଫଳ ହୋଇ ନ ପାରେ —କିଏ ଦାୟୀ ସେଥିପାଇଁ ? ବାବୁଲା କଣ୍ଢେଇ ନୁହେଁ ଯେ ତାକୁ ନଚେଇ ଅପଣ ଅନନ୍ଦ ପାଇବେ । ବାବୁଲା ! ଆ ମୋ ପାଖରେ, ପିବୁ ପରି—ଅସିଲୁ ?—ଏକ ନିଃଶ୍ୱାସରେ କହିଗଲି ।

ବନ୍ଧୁଙ୍କର ନତ ଚକ୍ଷୁଯୁଗ ଭିତରୁ ଧାର ଧାର ଲୋତକ ବହି ପଡ଼ୁଥିଲା । ଚୌକି ଉପରେ ହାତ ଦୁଇଟା ରଖି ସେ ବଡ଼ ଅଧୀର ହୋଇ ଉଠୁଥିଲେ ।

ସେତେବେଳେ ଘରୁ ବାହାରି ଅସିଲା ବାବୁଲା । ମୋ ଡାକରେ ନୁହେଁ, ହାତରେ ଚା କେଟଲ୍ ଆଉ କପ୍ ଧରି । ବୋଧହୁଏ ବାବୁ କହିବା ଆଗରୁ ସେ ଚା ତିଆରି ଆରମ୍ଭ କରି ଦେଇଥିଲା ।

ବାବୁ ଚା—କହି କେଟଲ୍ ଓ କପ୍ ଚୌକି ଉପରେ ଥୋଇ ଦେଲା ବାବୁଲା । ମୁହୂର୍ତ୍ତଟିଏ ଅବସର ନ ଦେଇ ବନ୍ଧୁ ବାବୁଲାକୁ ଯାଇ ଯାବୁଡ଼ି ଧରିଲେ । ପୂର୍ବପରି ଦୁଇ ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ସେ କହିଲେ··ବାବୁଲା କ୍ଷମା କରିବୁନା ମୋତେ ···ତୋ ଉପରେ ଅମାନୁଷିକ ଅତ୍ୟାଚାର କରିଚି···ନା ରେ······।

ବାବୁ ! ବାଷ୍ପାକୁଳିତ କଣ୍ଠରେ ବାବୁଲା କହିଲା ।

ଗାଡ଼ିବେଳ ଅଡ଼କି ମୋର ଇମା ନଜର ନ ଥାଏ, ସବସ୍ଥିତିଟା ମୋତେ ବଡ଼ ଅସହାୟ ଏବଂ କରୁଣ ଜଣା ପଡ଼ୁଥିଲା । ଆଉ ଜଣା ପଡ଼ୁଥିଲା ବାବୁଲି ଯେମିତ ଆଉ ମୋତେ ସମର୍ଥନ କରୁନ ।

——

କେବଳ ଯଯାତିର ନୁହେଁ, ଊଣା ଅଧିକରେ ସମସ୍ତଙ୍କର ଥିଲ, ଅଛି, ଥିବ । ପ୍ରତ୍ୟକ୍ଷରେ ହେଉ, ପରୋକ୍ଷରେ ହେଉ—ସମସ୍ତଙ୍କର ଅଛି । ଆଲେକ୍‌ଜାଣ୍ଡର, ନେପୋଲିୟନ, ହିଟଲର, ଆଇଜେନ୍ ହାଓ୍ୟାର ଅଥବା ଯେ କେହି ହୁଅନ୍ତୁ, ସମସ୍ତଙ୍କର ସେ ଅନୁଭୂତି ଥିବାର ପ୍ରମାଣ ମିଳେ । ଆତ୍ମ ପ୍ରାଧାନ୍ୟ ଗଣସମାଜ ପାଖରେ କିମ୍ବା ବନ୍ଧୁସମାଜ ଆଗରେ ପ୍ରତିପାଦନ କରି ପରୋକ୍ଷରେ ନିଜର ଅପକର୍ଷ ଗୋପନ କରିବାର ପ୍ରକୃତିଗତ ଚେଷ୍ଟା ସାଧାରଣତଃ ଦେଖାଯାଇଥାଏ । କିନ୍ତୁ ପ୍ରତ୍ୟକ୍ଷଭାବରେ ଅପ୍ରଭାବକ ଏବଂ ନିଜଙ୍କ ଚେଷ୍ଟା କରି ହାସ୍ୟାସ୍ପଦ ହେବାର ଭୂରି ଭୂରି ଚେଷ୍ଟା ମଧ୍ୟ ଦେଖିବାକୁ ମିଳେ ।

ଯଯାତି କିନ୍ତୁ ଏଇ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ କୌଣସି ଗୋଷ୍ଠିଙ୍କର ପର୍ଯ୍ୟାୟଭୁକ୍ତ ନୁହେଁ । ସେ ଅତି ବେକ୍‌ଠୋକ୍ ଭାବରେ କେବଳ ତାର ଗଭୀର ମନ ଗହନରେ ଅନୁଭବ କରୁଥିଲା ଆତ୍ମନିକୃଷ୍ଟିର ଗୋଟାଏ ମର୍ମାନ୍ତିକ ପ୍ରଦାହ । ଯଯାତି ଅଫିସରେ କିରାଣି କାମ କରେ । ସେଠି ସବ୍‌ଡେପୁଟିଠାରୁ ଆରମ୍ଭ କରି ବଡ଼ ବଡ଼ ସରକାରୀ ହାକିମ ପର୍ଯ୍ୟନ୍ତ ସମସ୍ତଙ୍କ ଝୁଙ୍କ ଖିଆଲ ତାକୁ ଜଣା—ହାକିମଠାରୁ ଫାଇଲର ଦାୟିତ୍ୱ ସେ ବେଶି ବୁଝେ । ତଥାପି ସତଆବାକୁ ସବ୍‌ଡେପୁଟି ଅମଳରେ ସେ ଅନେକ କଥା ନୂଆ ଶିଖିଲା । ନୂଆ ଜାଣିଲା । କ୍ଷମତାର ମୋହ ମଣିଷକୁ କିମିତି ଅତି ଅବିବେକୀ କରି ପକାଏ ତା ହାକିମ ତାକୁ ଦେଲେ ତାର ଢେର ଢେର ନମୁନା । ଯଯାତି କିନ୍ତୁ ଅତି ଧୀରସ୍ଥିର ଭାବରେ ତା କାମ ଚଳେଇଥାଏ । ତାର ଇଚ୍ଛା କେବଳ ପାଣି କୁଆଡ଼କୁ ଯିବ ଟିକିଏ ଥମ୍ଭି ଧରି ବସିଲେ ଜଣାପଡ଼ିବ । ହାକିମର ନିଜିକ ବଦଖିଆଲ ପାଇଁ ଯଯାତି କେବେ ଖାତିର୍ କରିନ

—କେବଳ ସେ ଭାବେ ସବ୍‌ଡେପୁଟି ଜୀବନ କିରାଣୀ ଫାଇଲରେ, ତେଲ ଦେଖି ସୁତା ଗୁଡ଼େଇ ଦେଲେ ଚଳିବ ।

ମୁଗ୍‌ଧା କିନ୍ତୁ ଯଯାତିକୁ ବିସ୍ମୟ ଅଭିଭୂତ କରିଥିଲା ।

ମୁଗ୍‌ଧା ?

ମୁଗ୍‌ଧା ତା ଜୀବନକୁ ନୂଆ କେହି ନୁହେଁ । ତାର ଜଣେ ସାଙ୍ଗ କିରାଣୀର ସାନ ଭଉଣୀ । ପ୍ରକୃତରେ ମୁଗ୍‌ଧାର ଚାଲିଚଳନ ଢଙ୍ଗଢ଼ାଙ୍ଗ ଯଯାତିକୁ ଅସ୍ଥିର କରିପକେଇଥିଲା । ଏଇ କେତେଟା ଦିନର ପରିଚୟ ଭିତରେ ମୁଗ୍‌ଧାର ଖୋଲାଖୋଲି ମିଳାମିଶା କଥାଭାଷା ଯଯାତିକୁ ବଡ଼ ଅସ୍ୱାଭାବିକ ଜଣା ପଡ଼ୁଥିଲା ।

ଯଯାତି ଅବିବାହିତ ।

ସେ ବାହା ହେବାକୁ ପସନ୍ଦ କରେନା ! ଯୋଗ୍ୟତା ପଛରେ ଯାହାହେଉ କେତେଟା ଟଙ୍କା ଦରମା ତାକୁ ଏଇ କିରାଣୀ ଚାକିରିରୁ ମିଳିବ ? ମିଛକୁ ଝିଅ ପିଲାଟାଏ ବେକରେ ଛନ୍ଦ ହନ୍ତସନ୍ତ ହବାଠାରୁଁ ସାର ହେବ ।

ଛଣକୁ ଶ୍ଲେଟ ଘାସକୁ ମୋଟ କିରାଣୀ ଜୀବନରେ ଦାମ୍ପତ୍ୟ ସୋହାଗ ବୋଲି ଗୋଟାଏ କିଛି ନ ରହିବା ଉଚିତ । ଏଇପରି ମନକୁ ମନ ଯୁକ୍ତି ଦେଖେଇ ଯାଯାତି ତିରିଶ ପାଖାପାଖି ଧରିଲାଣି । ଅମଲପଡ଼ାର ସିଙ୍ଗଲ କ୍ୱାଟର ଖଣ୍ଡିଏ···ପୁତ୍ରାସ୍ତ୍ରୀ ଗୁରୁଙ୍କର କେହିନାହିଁ । ହାତରେ ମୁଠେ ବସେଇ ଦିଏ ଯଯାତି । ଉଣା ଅଧିକରେ ସୁଖେ ଦୁଖେ ଦିନ କଟିଯାଏ । ନିଃସଙ୍ଗ ଜୀବନର ସାଥୀ ବୋଲି ଯଯାତି ପାଖରେ ଥାଏ ଅଫିସର ବେତାଏ ଫାଇଲ୍ ଆଉ ଶ୍ଲେଟ ସିଙ୍ଗଲ୍ ହାରମୋନିୟମ୍ ଖଣ୍ଡିଏ । କେଉଁଦିନ ବସିତ ଫାଇଲ୍ କାମ ନ

ଥିଲେ କମ୍ବା ଶୀଘ୍ର ଶେଷ ହୋଇଗଲେ ହାରମୋନିୟମ ଖଣ୍ଡିକ ଉପରେ ଟିପ ଚଳାଉ ଚଳାଉ ଯଯାତି ତାର ଭଙ୍ଗା ଦାଦରା କଣ୍ଠରେ ଢ଼'ଟା ଗୁଡ଼ାଏ ହଜିଲା ଦିନର ଗୀତର ସୁର ଧରେ । ହାରମୋନିୟମର କେତୋଟି ରିଡ୍ ନେ ଯ୍ୱା ଭିତରେ ଅଚଳ ଧ୍ୱଂଶ ସେଥିପାଇଁ ଯଯାତିର ନଜର ନ ଥାଏ; ସେ କେବଳ ଟିପ ଗୁଣ୍ଡୁ ଗୁଣ୍ଡୁ ଗୀତର ସୁର ଧରିଥାଏ ।

ଯଯାତି ପ୍ରେମିକ ନୁହେଁ ।

ତା ଗୀତ ଶୁଣି ଚଉଦ ଅସି କାଳରେ ପଡ଼ନ୍ତୁ ସେ କଥା ସେ କେବେ ଭାବିନି···ତଥାପି ସେ ଗାଏ···କେବଳ ଅମ୍ମ-ବିନୋଦନ ପାଇଁ ।

ବିଭୂତି ବେଳେ ବେଳେ ଆସି ଯଯାତି ପାଖରେ ବସେ । ଯଯାତି ଗୀତର ତାରିଫ କରେ···ଅଫିସ ହାକିମଙ୍କ ନାଁରେ ଗୁଡ଼ିଏ ଆଁଈ ଲ୍ବାଗ୍ରୁ ଗପ କଥା କୁପରାମର୍ଶ କରି ଗଲେ । ତା ପରେ ନିଜ ବସାକୁ ଫେରିଯାଏ । ଯଯାତି ତା କାମରେ ଲାଗେ ।

ସେଦିନ ଉପର ଓଳି ୪ଟା ହେବ । ଯଯାତି ବଜାର କରି ଫେରୁଥିଲା । ବିଭୂତି ଟିକିଏ ଦାଗଡ଼ା ଗଳାରେ କହିବାକୁ ଆରମ୍ଭ କଲା—ଭାଇ, ମିସେସଙ୍କର ନିମନ୍ତ୍ରଣ···ଆମ ଘରେ ଟିକିଏ ଗପ ହବ । ଯଯାତି ବସାର ପାଖ ବସାରେ ବିଭୂତି ପିଲାଛୁଆ ନେଇ ରହେ । କେବେ କିନ୍ତୁ ଏମିତି ହାର୍ଦ୍ଦିକତାର ଚିହ୍ନ ପର୍ଯ୍ୟନ୍ତ ଯଯାତି ଅନୁଭବ କରି ନ ଥିଲା । ଆଜି କିନ୍ତୁ ହଠାତ୍ ବିଭୂତି ତାକୁ ନିମନ୍ତ୍ରଣ କରୁଛି ଗପ ଖାଇବାକୁ । ପୁଣି ମିସେସଙ୍କର ତରଫରୁ । ଯଯାତି ସାଙ୍ଗେ ସାଙ୍ଗେ ଏଇ ଘଟଣାର କିଛି ଗୋଟାଏ କାରଣ ଅନୁସନ୍ଧାନ କରିବାକୁ

ଚେଷ୍ଟା କଲାନି । ସେ ଅତି ସ୍ୱାଭାବିକ କଣ୍ଠରେ ଉତ୍ତର ଦେଲା — ମୁଁ ଓ, ଛାତ୍ର କଣ !

ବିଭୂତିର ଦାଣ୍ଡଘରେ ଦୁଇ କବାଣୀ ବନ୍ଧୁ ଖଣ୍ଡିଏ ଛୁଣ୍ଡା ସଫ ଉପରେ ବସିଲେ । ଟିକିଏ ଗ୍ଲଡ଼ ତରୁଣୀଟିଏ ଦୁଇ ହାତରେ ଦୁଇ କପ୍ ଚା ଆଣି ସେମାନଙ୍କ ଆଗରେ ଥୋଇ ଦେଲା । ଅଧୁନିକ ଛୁଇଁଫସଲା ରୂପସୀର ମୁଖରେ ମୃଦୁହସର ଦାଗ—ଚକ୍ଷୁଯୁଗ ତାର ଅସୀମତା ବ୍ୟଞ୍ଜକ । ପୋଷାକ ଅତି ସାଦା, ଅତି ପରିଷ୍କାର··· ପାଦରେ ଅର୍ଦ୍ଧବ୍ୟବହୃତ କାନପୁରୀ ଚପଲ୍ । ଆଗରେ ଚା ଥୋଇ ଦେଇ ଯଯାତି ଉଦ୍ଦେଶ୍ୟରେ ତରୁଣୀଟି ଛୋଟ ନମସ୍କାରଟିଏ ପକେଇଲା ।

ବିଭୂତି ପରିସ୍ଥିତିକୁ ଅସ୍ୱାଭାବିକ ନକରି ଆରମ୍ଭ କଲା—ଯଯାତି ମୁଗ୍ଧାକୁ ତୁ ବୋଧହୁଏ ଜାଣିନୁ···ସେ ମୋ ସାନ ଭଉଣୀ···ଏ ବର୍ଷ ଲେକ୍‌ଚରର କମିଯିବାରୁ ପରୀକ୍ଷାରେ ଅପିୟାର୍ କରି ପାରିଲାନି । ରେଭେନ୍‌ସା କଲେଜରେ ଦ୍ୱିତୀୟ ବାର୍ଷିକ ବିଜ୍ଞାନରେ ପଢ଼ୁଛି ।

ଯଯାତି ଇତିମଧ୍ୟରେ ପ୍ରତିନମସ୍କାର ଜଣେଇ ସାରିଥିଲା ମୁଗ୍ଧା ଉଦ୍ଦେଶ୍ୟରେ । ସେ କହିଲା—ଜାଣିନି ମାନେ ପରିଚୟ ପୂର୍ବ ନାହିଁ କହିଲେ କଥାଟା ଠିକ୍ ହେବନି, ତେବେ ପ୍ରତ୍ୟକ୍ଷ ପରିଚୟ ନ ଥିଲା ।

ଲଜ୍ଜିତ ମୁଗ୍ଧା ଟିକିଏ ଜୋର୍‌ରେ ହସିବାର ଚେଷ୍ଟା କରି ଘର ଭିତରକୁ ପଳେଇ ଗଲା । ସେ ବୋଧହୁଏ ଯଯାତିର କଥା କହିବା ଶୈଳୀ ଭିତରେ ଲକ୍ଷ୍ୟ କରିଥିଲା ଗୋଟାଏ ଅଭିନବ ପ୍ରକାଶଭଙ୍ଗୀ । ଆଉ ସେଇଟା ତାର ହୃଦୟଗ୍ରାହୀ ହୋଇ ପାରିଥିଲା ।

ଟୁ ପିଉ ପିଉ ବିଭୁତି କହିଲା—ଜାଣୁ ଯଯାତି, ଏ ନିମନ୍ତ୍ରଣ ନିହାତି ଉଦ୍ଦେଶ୍ୟହୀନ ନୁହେଁ । ତୋ ଗୀତ ଅତିଚମତ୍କାର । ମିସେସଙ୍କର ଜିଦ୍ ତାଙ୍କ ବରାଦ ଅନୁଯାୟୀ ତୁ ତାଙ୍କୁ ଦି ଚାରୋଟି ଗୀତ ଶୁଣେଇବୁ । ଏଇ ମୁଗ୍ଧାହାର କମ୍ ନୁହେଁ । ଭାଉଜଙ୍କ ସାଙ୍ଗେ ମିଶି ସେଇ ଜିଦ୍ ଧରିଚି ।

ଟିକିଏ ଭାବିଲା ଯଯାତି । ତା ପରେ ସେ କହିଲା—ମନ୍ଦ ନୁହେଁ, ମୁଁ ଭାବୁଥିଲି ଏଇ ବିଭୁତିକୁ ବାଦଦେଲେ ମୋ ଗୀତ ଶୁଣିବାକୁ ଦ୍ୱିତୀୟ ଗ୍ରାହକ ଆଉ ଦୁନିଆ ଭିତରେ କେହି ନାହାନ୍ତି···କିନ୍ତୁ ଦେଖୁଚି ମୋ ଅଲକ୍ଷ୍ୟରେ ବି ଦୁଇଜଣ ଗରାଖ ତାଲିକାଭୁକ୍ତ ହୋଇ ସାରିଚନ୍ତି···ଜଣେ ବନ୍ଧୁ ପତ୍ନୀ, ଆଉ ଜଣେ ବନ୍ଧୁ ଭଗ୍ନୀ । ହଉ, ଏବେ ବରାଦ ଅପେକ୍ଷାରେ ରହିଲି ।

ସେଦିନ କିନ୍ତୁ ଆଉ ଗୀତ ବରାଦ ହେଲାନି । ଖାଲି ହାର-ମୋନିୟମ୍‌ରେ ଯଯାତି ଦୁଇ ତିନୋଟି ଗୀତ ମନକୁମନ ଗାଇଦେଲା··· ଉଦ୍ଦିଷ୍ଟ ଗୀତ ସହଜରେ ନିଜର ମାଦକତା ହରେଇ ଥାଏ । ସେଇଆ ହେଲା ।

ବାସ୍, ସେଇଦିନ ପରଠାରୁ ବିଭୁତିର ଭୂମିକା ଆଉ ଦରକାରୀ ମନେ ହୁଏନି । ଭାଉଜଙ୍କ ନାଁରେ ମୁଗ୍ଧା ଗୀତ ବରାଦ କରେ··· ଯଯାତି ଗାଏ ।

ପଛରେ କେତେ କଣ ଭାବେ ଯଯାତି । ନାଟକ ଉପନ୍ୟାସର ଘଟଣାତ ଏଇଟା ନୁହେଁ···କିମିତିକା କଥା ଏଇଟା ? ବଡ଼ ଅଦ୍ଭୁତ ଏଇ ବିଭୁତିଟା ସତେ ! କେବେ କିଛି ନ କହି ବସିବାର ନୀରବ ରହେ । ନଣନ୍ଦ ଭାଉଜ ଦୁଇଜଣ ମିଶି ତା ଉପରେ ରୀତିମତ

ଅତ୍ୟାଗ୍ରହ ଆରମ୍ଭ କରିଦେଲେଣି···! ଆତ୍ମନିବୃତ୍ତି କିନ୍ତୁ ଯଯାତିଙ୍କୁ ଅସ୍ଥିର କରିପକାଏ ।

ଏଥିପାଇଁ ହେତୁ ଅଛି ଯଥେଷ୍ଟ···କାରଣ ଶତଚେଷ୍ଟା ଭିତରେ ଯଯାତି କଲେଜ ବାରନ୍ଦା କୁଦି ଆସି ପାରିଲେନି । ସେଇ ତା ଜୀବନର ବଡ଼ ଅପଶୋଷ ! ମରଣଯାଏ ବି ଥିବ । ସେଥିଲାଗି ସବୁବେଳେ ସେ ନିଜକୁ ହତଭାଗ୍ୟ ମନେକରେ—କଲେଜ ଫେରନ୍ତା କେଉଁ ବାବୁ ହାକିମ ଅବା ପିଲା ସାଙ୍ଗରେ କଥାଭାଷା ହେଲାବେଳେ ସେ ନିଜକୁ ଅପରାଧୀ ବୋଲି ଧରିନିଏ । ଆତ୍ମନିବୃତ୍ତି ବା ଆତ୍ମଲଘିମା ଯାହା କହ ସେଇଟା ଯଯାତିର ଥିଲା । ଭିତରୁ ମଣିଷକୁ ଅତି ଛୋଟ କଥା ମଧ୍ୟ ଅତି ବଡ଼ ଜଣାପଡ଼େ···ନିଜର କୌଣସି ନିର୍ଦ୍ଦିଷ୍ଟ ଭାବ କାର୍ଯ୍ୟକାରୀ ନହେଲେ ଯେମିତି ପୃଥିବୀଟା ଭାଙ୍ଗି ପଡ଼ିବ, ସେଇଟା ସେ ହାଡ଼େ ହାଡ଼େ ଅନୁଭବ କରେ । ଯଯାତି ଆଉ କଣ ବା କରିପାରି ଥାନ୍ତା !

ମୁଗ୍ଧାର ଢଙ୍ଗ ଢାଙ୍ଗ ତାକୁ ଅଦ୍ଭୁତ ବଳବତ୍ତର କରିଥିଲା । କଲେଜ ପଢ଼ୁଆ ଅଭିଆଡ଼ୀ ଝିଅ···ବେପରୁଆ କଥାବାର୍ତ୍ତା । ଯଯାତି ଭାବେ ସବୁ କଥାରେ ମୁଗ୍ଧା ତା ସହିତ ମିଳାମିଶା କରେ···ଅତି ନିସଙ୍କୋଚରେ, କେବଳ ତା ମନ କଳିବାକୁ । ପକ୍ଷାନ୍ତରରେ ସେ ଧରିନିଏ ମୁଗ୍ଧା ଚକ୍ଷୁରେ ସେ କିରାଣୀ···ଅର୍ଦ୍ଧଶିକ୍ଷିତ । ମୁଗ୍ଧା ହୁଏତ ତାକୁ ପରିହାସର ହାସ୍ୟବସ୍ତୁ ବୋଲି ଗ୍ରହଣ କରି ଆନନ୍ଦ ପାଉଥିବ ।

ନୀରବ ରହେ ଯଯାତି । ମନେ ମନେ ସେ ଭାବେ ରହସ୍ୟମୟୀ ମୁଗ୍ଧାର ଚରିତ୍ର ପଢ଼ିବା ତା ପକ୍ଷରେ ସମୟସାପେକ୍ଷ । ତଥାପି ସେ

ଲକ୍ଷ୍ୟ କରେ ବେଳେବେଳେ ମୁଗ୍‌ଧାର ନିଷ୍ପ୍ରଭ ମୁଖ, ଆଉ ତାର ଭୋକିଲ ଆଖି ଅନ୍ତରାଳରେ ଉଦ୍ଦେଶ୍ୟହୀନ ହସ···ଇଂଗିତପୂର୍ଣ୍ଣ ବେଦନା । ତାହାକୁ କିଛି ପଚାରିବାର ସାହସ ଯଯାତି ଯୁଗରେ ନଥାଏ, ମୁଗ୍‌ଧାକୁ ବି ନୁହେ । କେବଳ ସେ ଭାବେ ଏଇ ମୁଗ୍‌ଧା, ବଭୂତି ଆଜ ବିଭୂତିର ସ୍ତ୍ରୀ କଥା । ତାର ଅଶଙ୍କାହୁଏ କିନା ମେଘରେ କେଉଁ ଦିନ ତା ମୁଣ୍ଡରେ ବଜ୍ରର ପଡ଼ିପାରେ । ମୁଦ୍‌ଧାର ଖୋଲଖୋଲି ମିଳାମିଶା···ପୁଣି ଅତି ନିକଟରେ ଠିଆ ହୋଇ ଗୀତ ଶୁଣା, ଏଗୁଡ଼ାକ ଦ'ଜଣ ଚୁବଜଣ ବାହାର ମଣିଷଙ୍କ ଆଖିରେ ପଡ଼ିଲଣି । କଣ ଭାବୁଥିବେ ସେମାନେ ?

ସେଦିନ କୃଷିପ୍ରଦର୍ଶନୀ ଦେଖିବାକୁ ଯଯାତି, ମୁଗ୍‌ଧା, ବିଭୂତି ଓ ବିଭୂତିର ସ୍ତ୍ରୀ ଏକାସାଙ୍ଗରେ ଯାଇଥିଲେ । ଫେରିଲା ପରେ ଯଯାତି ବିଭୂତି ବସାରେ ରାତିଭୋଜନ କଲା । ଖାଇ ସାରି ଦୁଇବନ୍ଧୁ ଅଗଣାରେ ଦୁଇଖଣ୍ଡ ଚୌକିରେ ବସିଥାନ୍ତି । ମୁଗ୍‌ଧା ସାମ୍ନାଘରର ଦ୍ୱାରବନ୍ଧ ଧରି ଛିଡ଼ା ହେଲା । ନିବେଦିତାର ଢଙ୍ଗ ନେଇ ସେ ଯଯାତିକି ଲକ୍ଷ୍ୟ କରି କହିଲା—ସେଦିନ ଯେଉଁ ଗୀତଟି ଖରାବେଳେ ଆପଣ ଏକା ଏକା ଗାଉଥିଲେ, ସେଇଟି ଆଜ ଟିକିଏ ଗାଆନ୍ତୁ ନା ! ମୋତେ ବଡ଼ ଭଲ ଲାଗେ ସେ ଗୀତଟି ।

ଯଯାତି ଅବଚଳିତ କଣ୍ଠରେ କହିଲା—ଗୀତର ନାଁଟା ଅନ୍ତତଃ ପ୍ରଥମ ଲାଇନଟା ନ କହିଲେ ମୁଁ ଜାଣିବି କିମିତି ? ମୁଁ ତ ଏମିତି ବହୁତ ଗୀତ ଗାଏ ।

ହଁ ହଁ ମନେ ପଡ଼ିଲା, ସେଇ ଯେଉଁ 'ଜୀବନେ ଯାହାକୁ ତମେ ପାଇନା ଭଲ' ଗୀତଟି—ମୁଗ୍‌ଧା କହିଲା ଟିକିଏ ଔତ୍ସୁକ୍ୟଭରା କଣ୍ଠରେ ।

ଚମକି ପଡ଼ିଲା ଯଯାତି । ଆଉ କଣ ପଦେ କହୁ ପକାଇବ ବୋଲି ତା ମନକୁ ଆସୁଥିଲା । ତଥାପି ନିଜ ମନକୁ ସଂଯତ କରି ନେଇ ଭାବିଲା ଟିକିଏ—ଭାଇ ଭାଉଜ ଆଗରେ ମୁଗ୍ଧା ଏଇ ଗୀତ ଶୁଣିବ ।

ମୁଗ୍ଧା ତା ନାକଅଗ୍ର ପୁଣି ପଚାରିଲା – କଣ ନୀରବ ରହିଲେ ଯେ ?

ଏଥର ଯଯାତି ଉତ୍ତର ଦେଲା—ମୋତେ ପୂର୍ବ ଗୀତଟା ଜଣା ନାହିଁ, ଯୋଡ଼ିଏ ଲାଇନ କେବଳ ମୁଁ ଜାଣେ ।

ମୁଗ୍ଧା—ମିଛ କହୁଛନ୍ତି ଆପଣ, ଆପଣଙ୍କ ମୁହଁରୁ ଶୁଣି ମୁଁ ଅନ୍ତତଃ ଦ'ଲାଇନରୁ ଅଧିକ ମନେ ରଖି ନେଲିଣି ।

ଯଯାତି—ନିହାତି ଗୀତଟା ଯଦି ଦରକାର ମୋ ଖାତାରୁ ଛିପି ନେଲେ ଚଳିବ ତ ?

ଅତ ନାଲ୍ଲିଙ୍କ ମୁହଁରେ କଭୁତ ମୁଗ୍ଧା ତରଫରୁ ଯୁଦ୍ଧ ଆରମ୍ଭ କଲା—ଏଇମିତ ଭାବରେ ମୁଗ୍ଧାକୁ ତୁ ବେଶ୍ ଠକି ଦବାକୁ ବସିଚୁ ଯଯାତି ?

ବଡ଼ ଅସ୍ୱସ୍ତି ବୋଧକଲା ଯଯାତି । ନାନା ଅବାନ୍ତର ପ୍ରସଙ୍ଗର ଅବତାରଣା ଭିତରେ କଥାର ମାର୍ଗ ସେ ବଦଳେଇ ଦେଲା । ତା ଗୀତ ଗାଇବା କଥା ତା ଭିତରେ ଆଉ ଉଠିଲାନି । ନିରୁତ୍ତର ମୁଗ୍ଧା ମନେ ମନେ କଣ ଭାବୁଥିଲା କେଜାଣି ସେ ଦ୍ୱାରବନ୍ଧ ପାଖରେ ଛିଡ଼ା ହୋଇ ଯଯାତି ଓ କଭୁତି ଆଡ଼କୁ କେବଳ ବଲ ବଲ କରି ଚାହିଁ ରହିଥାଏ ।

ସେଦିନ ରାତିରେ ଯଯାତି କୁ ଜମା ନିଦ ଆସିଲାନି । ନାନା ଦୁଶ୍ଚିନ୍ତାରେ ପଡ଼ି ସେ ଶେଯ ଉପରେ ଖାଲି ଛଟପଟ ହେଲା । ମୁଗ୍ଧା କଣ ତେବେ···? ?

ଯଯାତି ତାର ଯଯାତିତ୍ୱ ଭୁଲିଯାଏ ।

କଳ୍ପନାର ଫାଙ୍କା ଆସନ ଆଉ ତାକୁ ଫାଙ୍କା ଜଣାପଡ଼େନି । ସେ ସ୍ଥାନରେ ମୁଗ୍‌ଧାକୁ ଦେଖି ମାନସ ଚକ୍ଷୁ ତାର ଉତ୍ଫୁଲ୍ଲ ହୋଇଉଠେ । ଅମ୍ଳଲଘିମା ତାର ନିରର୍ଥକ ଜଣାପଡ଼େ । ପ୍ରେମ ରାଜ୍ୟରେ ବୃଷ୍ଟି ନିବୃଷ୍ଟିର ସ୍ଥାନ ନାହିଁ···ବଂଧୁରତାହୀନ ସମଭୂମି ସେ ? ପୁଣି ଯଯାତି ବାସ୍ତବତାର ନିଷ୍ଠ ନଗ୍ନଚିତ୍ର ଆଡ଼କୁ ମନ ଫେରେଇ ଅଣେ···ଅଫିସରେ ବସି ଫାଇଲ ଘାଣ୍ଟୁଚି ସେ । ଫାଇଲ, ତାର ସୈନିକ ଜୀବନର ଯୁଦ୍ଧଭୂଇଁ । ତାଉ ଉପରେ ନିର୍ବିକାର କଲମ ତାର ଯୁଦ୍ଧକରି ଚାଲିଚି···ବଡ଼ ନିର୍ଲିପ୍ତ, ବଡ଼ ନିରଳସ ଗତିରେ । ଅଥ ତାର ସାମ୍ନାରେ ଯୁବକ ବଂଧୁର ହାତଧରି ମୁଗ୍‌ଧା ଚାଲିଚି କଲେଜଆଡ଼କୁ । ସେମାନଙ୍କର ଉଦ୍ଦାମ ହସର ଯୁଗ୍ମ ଆୱାଜ ଏକୀକୃତ ହୋଇ ଇଥର-ତରଙ୍ଗରେ ଲକ୍ଷ୍ୟ ଭାସୁଚି ।

ଆଉ ଭାବି ପାରେନି ଯଯାତି । ପ୍ରହେଳିକାମୟ ଜୀବନ ତାକୁ ଗୋଟାଏ ମସ୍ତ ଭୁଲ ଭଳିଆ ଜଣାପଡ଼େ ।

ରାତି ଭିତରେ ତାର ଚେତନ ପ୍ରାଣ କେତେବେଳେ ଅବଚେତନ ଅଂଚଳକୁ ତାର ଅଜାଣତରେ ଚାଲିଯାଇଚି । ସେ ଶୋଇପଡ଼ିଚି ଗୋଟାଏ ଗଭୀର ନିଦ୍ରାରେ ।

ପ୍ରାତଃକାଳର ଠିକ୍ ଏ ଆଗରୁ ଅନ୍ଦାଜ ସାଢ଼େ ଛଅଟା ହେବ । ଯଯାତିଙ୍କ ଘରର ଦରଜା ଧଡ଼ ଧଡ଼ କରି ଅଦ୍ଭୁତ ଗୋଟାଏ ସ୍ଥୂଳଆ ଗଳାରେ ଡାକିଲା ଯଯାତି !···ଯଯାତି !!

ଯଯାତିର ପାତଳା ନିଦ ଚହଁକିନା ଭାଙ୍ଗିଗଲା ।

ସେ ନିଦୁଆ ଗଳାରେ ପ୍ରଶ୍ନ କଲା—କିଏ ?

ବିଭୂତି ସ୍ୱାଭାବିକ ଗଳାରେ କହିବାକୁ ଚେଷ୍ଟାକଲା—ମୁଁ ବିଭୂତି ଡାକୁଚି, ଟିକିଏ ଦରଜା ଖୋଲି ପଦାକୁ ଆସିବୁ ?

ଯଯାତି କିନ୍ତୁ ଲକ୍ଷ୍ୟ କରିଥିଲା ବିଭୂତିର ଆଶଙ୍କା ବିଜଡ଼ିତ କଣ୍ଠସ୍ୱରରେ ଲୁଚି ରହିଚି ଚଞ୍ଚଳତା,···କ୍ଷିପ୍ରତା ମଧ୍ୟ । ଆଉ ଅବାନ୍ତର ପ୍ରଶ୍ନ ନ କରି ସେ କବାଟ ଖୋଲି ପଦାକୁ ଚାଲି ଆସିଲା । ବିଭୂତିର ଖୁବ୍ ପାଖରେ ପହଞ୍ଚି ଅତି ଆପଣାର ଭଙ୍ଗୀରେ ସେ ପଚାରିଲା—କଥା କଣ ?

ମୁଗ୍‌ଧା କେତେବେଳେ ରାତିରେ ଉଠି ଘରୁ ଚାଲି ଯାଇଛି କୁଆଡ଼େ—ବିଭୂତି କହିଲା ।

ଅଶନିରାଶି ଯେମିତି ଯଯାତିର ମୁଣ୍ଡ ଉପରେ ଅଜାଡ଼ି ପଡ଼ିଲା । ସେ ହଠାତ୍ ମନକୁ ମନ ବଡ଼ ଦୁର୍ବଳ ଅନୁଭବ କଲା । ଘଟଣାଟା ଘୁରି ଘୁରି ତା ଉପରକୁ ମାଡ଼ି ମାଡ଼ି ପଡ଼ିଲା । କାରଣ ଏ ନିରୁଦ୍ଦେଶ୍ୟ ପଛରେ ତାରି ହାତ ଅଛି ବୋଲି ବିଭୂତି ତାକୁ ନିଶ୍ଚୟ ସନ୍ଦେହ ଚକ୍ଷୁରେ ଦେଖୁଥିବ । ବିଭୂତିକୁ ଆଉ ଅଧିକ ଭାବିବାକୁ ନଦେବ ବୋଲି ସ୍ଥିରକରି ସେ ବଡ଼ ନିସ୍ପୃହ ମନନେଇ ପ୍ରଶ୍ନ କରିବାକୁ ଲାଗିଲା ସତରେ ମୁଗ୍‌ଧା ନାହିଁ, କଣ କରିବାକୁ ହେବ ତାହେଲେ ? ଏଥିରେ ମିଛ ନାହିଁ କିଛି ଯଯାତି, ଚହଟିତ କଥା ସେ । କହିବାକୁ ଢେର ସମୟ ଦରକାର···ବର୍ତ୍ତମାନ ଏଇ ଲୋକାଲ୍ ବସରେ ମୁଁ କଟକ ଚାଲିଲି । ଆଉ କିଛି କହିବାକୁ ବେଳ ନାହିଁ । ଫେରିଲେ ସବୁ କହିବି ତୋତେ । ଟିକିଏ ନଜର ଦେଇଥିବୁ କଥାଟା । ଯେମିତି ଗୁରିଆଡ଼େ ପ୍ରଘଟ ନ ହୁଏ—କହି କହି ବିଭୂତି ବସ୍‌ଷ୍ଟାଣ୍ଡ ଆଡ଼କୁ ଅଗେଇଲା ।

ଯଯାତି ଭକୁଆଙ୍କ ଭଳି ନୀରବରେ ଛିଡ଼ାହୋଇ ଥାଏ । ଘଟଣାର ମୂଳରୁ ଆରମ୍ଭକରି ବିଭୂତିର ଏ ସୂଚନା ପର୍ଯ୍ୟନ୍ତ ତାଙ୍କୁ ବଡ଼ ରହସ୍ୟଭରା ଜଣାପଡ଼ୁଥାଏ ସତେ ! ତା ଚିନ୍ତାକ୍ରମ କଣ ତେବେ ଭୂମିହୀନ··· ପୁରାପୁରି ଭାବରେ ଭୂମିହୀନ ? ଫାଇଲ ଛଡ଼ା ତାର ଅନ୍ୟ କାମ ଅନ୍ୟ ଚିନ୍ତା କଣ ଦୁନିଆରେ ଅର୍ଥହୀନ ତେବେ ?

ତିନିଦିନ କଟିଗଲାଣି ।

ନିରୁଦ୍ଦିଷ୍ଟା ମୁଗ୍ଧା ଏବେ ବି ନିରୁଦ୍ଦିଷ୍ଟା ହୋଇ ରହିଛି ।

ମୁଗ୍ଧା ଚାଲିଯିବାର ଦ୍ୱିତୀୟ ଦିନ ମାନଧାତା ସାଆନ୍ତଙ୍କ ଝିଅ ଲତା ଯେତେବେଳେ ବିଭୂତି ଘରକୁ ବୁଲିଆସେ ବିଭୂତି ସ୍ତ୍ରୀ ବହୁ ଅଡ଼ୁଆରେ ପଡ଼ିଲେ । ଲତା ଯଦି ମୁଗ୍ଧା କଥା ପଚାରିଦିଏ ସେ କଣ କହିବେ ? ସେଥିଲାଗି ସେ ଯଯାତିର ମତାମତ ଲୋଡ଼ିଥିଲେ । ଯଯାତି କହିଲା—କହିଦେବେ ମୁଗ୍ଧା ଭାଇଙ୍କ ସଙ୍ଗେ ଘରକୁ ଚାଲି-ଯାଇଛି, ଘରୁ କଣ ଜରୁରୀ ଚିଠି ଆସିଥିଲା । ସେଇ କୈଫିୟତ ମଧ୍ୟ କାଏମ୍ ରହିଲା । ତାପରେ ଯଯାତିର ମନ ବ୍ୟତୀତ ମୁଗ୍ଧା ଖବର ଆଉ କେହି ତଲାସ କରିନି । ଏପର୍ଯ୍ୟନ୍ତ ବିଭୂତି କଟକରୁ ଫେରି ନଥାଏ

ଅଫିସ୍ ଫେରନ୍ତି ଚିଠିଖଣ୍ଡେ ପାଇଲା ଯଯାତି । ମୁଗ୍ଧା ଲେଖିଛି ।

ଯଯାତି ବାବୁ, ନମସ୍କାର···

ଆପଣ ମୋତେ ନିଶ୍ଚୟ ଭୁଲ ବୁଝିନଥିବେ । ଶେଷ ଉପାୟ ଅବଲମ୍ବନ କରି ମୋତେ ଘରଛାଡ଼ିବାକୁ ପଡ଼ିଲା । ବାପମାଙ୍କ ଇଚ୍ଛା ବିରୁଦ୍ଧରେ ମୁଁ ମୋର ଜଣେ ସହପାଠୀଙ୍କୁ ପ୍ରେମ କରିବାକୁ ଆରମ୍ଭ କରେ । ସେଥି ଲାଗି ମୋତେ ନିର୍ବାସନ ଦଣ୍ଡ ମିଳିଥିଲା । ମୋ ଉପାୟରେ ମୁଁ ଖଲାସ ହୋଇଛି···ବାପା ଭାଇଙ୍କ ପସନ୍ଦ ମଣିଷକୁ ମୁଁ

ପ୍ରେମ ନ କରିବାଟା ଅତି ସ୍ୱାଭାବିକ କଥା । ଆମ ଘରର ମଣିଷ କାନ୍ତୁ ସେତିକ ଧୁନ୍ଦୁଧୁଙ୍ଗମ କରିବାର ସହନଶୀଳତା ଅର୍ଜନ କରିପାରି ନାହାନ୍ତି । ସେମାନଙ୍କର ଶିକ୍ଷା, ସଭ୍ୟତା, ସଂସ୍କୃତି ଏସବୁ ଗ୍ରହଣ କରିବାକୁ ରାଜି ନୁହେଁ । ଯାହାହେଉ ସେସବୁ ମୋ କାମ, ମୁଁ କରି ପାରିଚି···ଆପଣଙ୍କ ଅଳ୍ପଦିନର ସାହଚର୍ଯ୍ୟ ମୋତେ ସେଇ ଦୂର ଦେଶରେ ବଞ୍ଚିବାର ଯେ କେତେ ପ୍ରେରଣା ଆଉ କେତେ ଉତ୍ସାହ ଦେଇଚି ସେ କଥା ମୁଁ ଜାଣେ ଏବଂ ତାରି ଲାଗି ଆଜି ଆପଣଙ୍କ ପାଖରେ ମୁଁ ଋଣୀ । ମୋର ବିଶ୍ୱାସ ଆଉ ଶେଷ ଆଶା ବାପାଭାଇଙ୍କ ସବୁ ଭୁଲ ସ୍ୱୀକାର କରି ମୋଠାରୁ ଆପଣ ଅନ୍ୟ କିଛି ପ୍ରତ୍ୟାଶା କରି ନଥିବେ···ଯା ଲାଗି ପୁଣି ସେଇ ବାପାଭାଇଙ୍କ ପରି ଅନୁଶୋଚନା କରିବେ ପଛରେ । ଇତି ।

ଆପଣଙ୍କର
ମୁଗ୍ଧା

ଚିଠି ପଢ଼ିସାରି ଯଯାତି ହାତର ଫାଇଲଟାକୁ ଗୁହାଁଇଲ—ଦୃଷ୍ଟି ତାର ନିର୍ବୋଧ । କଣ ଭାବି ଚିଠିଖଣ୍ଡି ଫାଇଲ ଭିତରେ ଗୁଞ୍ଜିଦେଲା ବେଳକୁ ପଛରୁ ସାଇକେଲ ଘଣ୍ଟି ବାଜି ଉଠିଲା । ସେ ମୁହଁ ଟେକି ଦେଖେତ ପଛରୁ ସିଦ୍ଧଅବାବୁ ଆସୁଛନ୍ତି । ଅଫିସ୍ ଫେରନ୍ତା ବାଟରେ କେଉଁଠି ଅଟକି ଯାଇଥିଲେ ବୋଧହୁଏ ।

---

ଭ୍ରୂଣ ହତ୍ୟା···ତମେ କହୁଛ ଭ୍ରୂଣ ହତ୍ୟା କରିବାକୁ ?—

ହଁ ସିପ୍ରା, ମତେ ଅବିଶ୍ବାସ କରୁଚ ?—

ନାହିଁ ତ—

ତାହାହେଲେ ମୋ କଥାକୁ ଇଙ୍ଗିତ କରିବାର ଉଦ୍ଦେଶ୍ୟ ?—

ଇଙ୍ଗିତତ ନୁହେଁ । ତମର କାହିଁକି ଭଲ ଏଇମିତ ଝୁଙ୍କ ? ତମେ ଜଣେ ସ୍ରଷ୍ଟା···କେତେ ଗଳ୍ପ ଲେଖୁଛ, କେତେ କବିତା ଲେଖୁଛ, ସେସବୁର ସାରମର୍ମ କଣ ତେବେ ଏଇ ଆଦର୍ଶକୁ ଭିତ୍ତିକରି ଗଢି ଉଠିଛି ?—

ମତେ ଭୁଲ ବୁଝ ନାହିଁ ସିପ୍ରା । ସୃଷ୍ଟି କରିବାରେ ସାର୍ଥକତା ନାହିଁ ବରଂ ପାଳନର ଗୁରୁଦାୟିତ୍ୱ ମୁଣ୍ଡେଇ ପାରିଲେ ସବୁ ହୁଏ ? —ସେହି ଅଧିକାରେ ପରିକଳ୍ପନାର ପଞ୍ଜା ଏତେ ବଢ଼ିଛି ?—

ନା ନା ସିପ୍ରା···

ମୁଁ ଶୁଣିବିନି ତମର କିଛି କଥା···ତମେ ତମର ଉଦାସୀନ ଜୀବନ ନେଇ ସେଇମିତ ଥାଅ । ପାଳନର ଦାୟିତ୍ୱ ଉପରେ ଜନନୀ କେବେ ତାର ସନ୍ତାନକୁ ପେଟରୁ ଫୋପାଡ଼ିଦେଇ ପାରେନି । ତମେ ତମର ଲେଖନୀ ନେଇ ବଞ୍ଚ । ମାଆ ମୁଁ । ମାଆର ଦାୟିତ୍ୱ, ମାଆର କର୍ତ୍ତବ୍ୟ ମୋ ହାତରେ ଛାଡ଼ିଦିଅ···

ମୁଁ ଭୁଲ କରିଛି ସିପ୍ରା—ଚକ୍ଷୁ କୋଣରୁ ଅଶ୍ରୁର ଛିଟା ଗଡ଼ି ପଡ଼ୁଥିଲା । ବଡ଼ ଦୁର୍ବଳ ତମେ କବି—ନାରୀ ହୃଦୟର ଦମ୍ଭ ଟିକକ ତମ ଛାତିରେ ନାହିଁ ଏଇମିତ ହେଲେ କଣ ଦୁନିଆ···?

'ଟିକେଟ, ଟିକେଟ୍'—ଟି: ଟି: ଆଇ: ର ମୃଦୁ କରସ୍ପର୍ଶରେ ଅଧର ଚମକି ପଡ଼ିଲା । ଆଖି ଖୋଲି ଗୃହେଁତ—ଗାଡ଼ି ଚାଲିଛି, ଆଗରେ ଟି: ଟି: ଆଇ: ।

ଭୋର ପାଞ୍ଚଟା ହେବ । ତାମସୀର ଝୀନ ଆବରଣ ଏବେବି ଢାଙ୍କି ରଖିଛି ପୃଥିବୀଟାକୁ । ଏଇ ବ୍ରାହ୍ମ ମୁହୂର୍ତ୍ତକୁ ଶରତର ପ୍ରଭାତୀ ବାଆ ଯେମିତି ସ୍ୱାଗତ ଜଣାଉଛି । ଏଇ ସ୍ୱାଗତର ମଧୁର ଗାନ କରି ପୁଞ୍ଜିଏ ଗତ ନୂଆ ନିଦ୍ରାଳୁ ହୋଇ ଉଠୁଥିବ । ମଜଦୁରର ପ୍ରାଣ କିନ୍ତୁ କର୍ମ ମୁଖର ହୋଇ ଉଠୁଛି—ଏଇ ଅବାହନୀ ଭିତରେ ତାର କମିତି ସ୍ୱରୁ ସ୍ୱରୁରେ ମେଣ୍ଟି ଯିବ ବୋଲି—ପାଟଳ ରାଗ ରଞ୍ଜିତ ଜୀବନର ନବ ପ୍ରେରଣା··· ।

ଅଧିର ଚଞ୍ଚଳ ଓ ଉତ୍କ୍ଷିପ୍ତ ମନ ଦେଇ ଅନେଇ ରହିଛି ସେଇ ପୂର୍ବ ଦିଗକୁ । କବି ପ୍ରାଣରେ ଆଜି ତାର ସ୍ପନ୍ଦନ ନାହିଁ—ଚକ୍ଷୁରେ ମାଦକତା ନାହିଁ—ସେ ଅନେଇଛି···ସେଇ ପୂର୍ବ ଦିଗକୁ—ଆଖିରେ ତାର ଲୁହ—ଗୁରୁ ବର୍ଷ ତଳେ, ହଁ ହଁ ଗୁରୁବର୍ଷ ତଳେ ତା ମନରେ ଖିଆଲ ଜାଗିଥିଲା ସିପ୍ରାର ଗର୍ବ ନଷ୍ଟ କରିବାକୁ ।··· ମାଲା—ତାର ମାଳାକୁ । ମାଳାର କଳଙ୍କ ଜୀବନକୁ ବିକାଶ ଲଭି ସୁଯୋଗ ନ ଦେବାକୁ···। ସିପ୍ରା ସଙ୍ଗେ ସେଥିଲାଗି ତୁମୁଳ ଝଡ଼ ସୃଷ୍ଟି ହୋଇଥିଲା । ସେଇ ଦିନର ଘଟଣା—ଅବଚେତନ ମନର କଥା—ଆଜି ତାହିଁକି ଏମିତି ଅପ୍ରତ୍ୟାଶିତ ଭାବରେ ଆତ୍ମ ପ୍ରକାଶ କଲା ?—ପୁଣି ସ୍ୱପ୍ନ ଆକାରରେ ? ଅଧିର ପକେଟରୁ ସିପ୍ରାର ଚିଠିଖଣ୍ଡି ଖୋଲି ଆଉ ଥରେ ପଢ଼ିଲି—ସିପ୍ରା ଲେଖିଛି -ମାଳା କହୁଛି ତମେ ଦଶହରାକୁ ଆସିବ । ତାପାଇଁ ଜାମା ଆଣିଦେବ - ସେ ତମ ସାଙ୍ଗରେ ଦଶହରା ଦେଖିଯିବ—ସେ ପୁଣି କହୁଛି ତମେ ତାକୁ କୁଆଡ଼େ କହିଚ ଦଶହରା ବଜାରରୁ ଗୋଟେ କଳଘୋଡ଼ା କିଣିଦେବ ବୋଲି—ମୁଁ ତୋଟାଏ ମଟେଇ ଦବାକୁ ତାକୁ ଯେତେ ବୁଝେଇଲି ସେ ଜମାରୁ ରାଜି ହେଉନି । ବରାବର ଜିଦ୍‌କରି କହୁଛି ବାବା ଘୋଡ଼ା ଦବ ଦଶହରାକୁ···। ଦଶହରା···ଦଶହରାର କାଲିଠାରୁ ଗୁଲିଗଲାଣି—ଶୁଖିଲା

ମୁହଁରେ ଟିକିଏ ହସର ଗୁପ ଖେଳେଇବାକୁ ଅଧର ଚେଷ୍ଟା କଲା । ମନେ ମନେ ଭାବିଲା ସେ—ମାନ୍ନା କିନ୍ତୁ ବୁଝି ପାରିବନି ଅବସ୍ଥା ଓ ପରିସ୍ଥିତି । ମଣିଷ ଅବସ୍ଥା ଓ ପରିସ୍ଥିତିର ପୁତ୍ତଳିକା—ସିପ୍ରାର ଚିଠି ପାଇଲା ପରେ ସେ ଅକ୍ଲାନ୍ତ ଚେଷ୍ଟା କରିଚି କରିଚି ଦଣ୍ଡବତ୍ ଆଗରୁ ଘରକୁ ଫେରିବ—କିନ୍ତୁ କାହିଁ ? ହୋଇପାରିଲା ନାହିଁ ତ । ସନ୍ତାନର ଆକର୍ଷଣ ପିତାର ପଥର ହୃଦୟକୁ ତରଳାଇ ତାକୁ ଗୃହମୁଖା କରିପାରିଲା ନାହିଁ ତ । ଦେଶର ଏକ ବଡ଼ିଆ ଥିଏଟର କମ୍ପାନୀର ପରିଚାଳନା ଭାର ମାନ୍ନାର ବାପା ହାତରେ—ସେ ଦାୟିତ୍ୱକୁ ବୁଝେଇନେଇ ପିତୃତ୍ୱର ଧର୍ମ ରକ୍ଷିହେଲା ନାହିଁ ତ—ମସ୍ତିଷ୍କ ତାର ଗୋଳମାଳିଆ ହୋଇଗଲା । ସତରେ ଅଧର ବୁଝିପାରେନି—ତା ଜୀବନର ବଡ଼ିଆ ପରିବର୍ତ୍ତନ । ଏଇ କେତେଟା ବର୍ଷ ଆଗରୁ ତାର ମତଗତି ଚାଲିଚଳନ ସବୁଥିରେ ଉଦାସୀନତାର ଏକ ବଡ଼ିଆ ଛାୟାପାତ ହୋଇ ରହି ଥିଲା । ସଂସାରର ସ୍ନେହ ମମତା···ଟଙ୍କା ପଇସା···ଲୋଭ ସେ ସବୁର ଆକର୍ଷଣ କେଡ଼େ ତୀବ୍ର । କେତେ ଉଚ୍ଚାଟ ସେ କମା ବୁଝି ପାରି ନଥିଲା । ସେ ସବୁ କରେ । ସବୁ ଦେଖେ—ମାତ୍ର ମନ ତାର କାହିଁରେ ଲିପ୍ତ ନଥାଏ । ବନ୍ଧୁମାନେ ଏପରିକି ସିପ୍ରା ମଧ୍ୟ ବହୁତ ଥର ତାକୁ କହୁଛନ୍ତି—କଲି ନଥାଇବ ଏମିତି ମଣିଷ ସୃଷ୍ଟିରେ ଅଛନ୍ତି ସେକଥା ତାର ଆଗରୁ ବିଶ୍ୱାସ ନଥିଲା । ଅଧର ସମସ୍ତଙ୍କର ସବୁ ପରିହାସ, ଥଟ୍ଟା ନୀରବରେ ଶୁଣେ···ଆଉ ଟିକିଏ ନୀରବରେ ହସିଦିଏ । ବାସ୍ ସେଇ ତାର ଉତ୍ତର । ତା ମନର ଉଦାସୀନତାର କାରଣ ଅଧର କିନ୍ତୁ ଜାଣେ···ଅପର ପାଖରେ କହି ଦୁଃଖ ଲାଘବ ପାଇଁ ସେ କେବେ ଚେଷ୍ଟା କରିନି । ବରଂ ମନରେ ମନଦୁଃଖ ରଖି ସେ ଶାନ୍ତି ପାଏ । ବସୁନ୍ଧରାର ଉପକୂଳରୁ ସ୍ୱପ୍ନଧାରା ତାର ବାଲିଘରଡ଼ା ସଂଗ୍ରହ କରେ··କଳ୍ପନାର ପକ୍ଷୀ ତାର କଳ୍ପନାର

ସୀମାରେଖା ଝପି ଧୂଳୁ ଥାଏ···କିନ୍ତୁ ଯା ଭିତରେ ବିରାଟ ପରିବର୍ତ୍ତନ ଆସିଛି—ମାଲାର ଜନ୍ମପରେ ଅଧିର ପ୍ରାଣରେ ପରିବର୍ତ୍ତନ ଆସିଛି । କିଛି ନୁହେଁ···ସେ ପରିବର୍ତ୍ତନ···ଆଉ କିଛି ନୁହେଁ ମୋହ ।···ପିତାର ସନ୍ତାନ ପ୍ରତି ଯେଉଁ···ମମତା···ବାତ୍ସଲ୍ୟ ସେଇ ଟିକିକ ତା ପ୍ରାଣରେ ସୃଷ୍ଟି କରିଛି ଅନୁରାଗ···ଆଶକ୍ତି । ଯେଉଁ ଘର କଥା ଗୁରୁ ପାଞ୍ଚବର୍ଷ ଆଗରୁ ମୁଣ୍ଡକୁ ସେ କମା ଆଣୁ ନଥିଲା, ଆଜି ସେତକ ଆଉ ନାହିଁ । କଳ୍ପନାରୁ ସାନ୍ତ୍ୱନା ମିଳିବାର ମାଦକତା ଆସ୍ତେ ଆସ୍ତେ ଲିଭି ଆସିଲାଣି । ବେଳେ ବେଳେ ତଥାପି ମନେ ପଡ଼େ—ବିଗତ ବସନ୍ତର ସ୍ୱପ୍ନ । ହେଲେ ଅଧିର ଘର ମୁହାଁ ହୋଇଛି । ସେ ଜାଣି ପାରେନି—ଏ ପରିବର୍ତ୍ତନର ହେତୁ କଣ ହୋଇପାରେ ? ମାଲା ଆଗରୁ ତ ତିନି ପୁଅ ଥିଲେ···ସେମାନଙ୍କ ଲାଗି ପିତାହୃଦୟ ତାର କେବେହେଲେ ତରଳି ପଡ଼ି ନଥିଲା । ଠିକ୍ ଗତାନୁଗତିକତା ସଙ୍ଗେ ଖାପ୍ ଖୁଆଇ ସେ ବାପ ଭଳି ଅଭିନୟ କରି ଚାଲିଥିଲା । ମୋହ, ମାଦକତା, ଆଶକ୍ତି, ଅନୁରାଗ କିଛି ତା ମନକୁ ଖାପୁ ନଥିଲା । ସବୁବେଳେ ସବୁଥିରେ ଶିଥିଳତା···ଚାଲୁ ଥାଉ ସଂସାର ତା ଗତିରେ···। କିନ୍ତୁ ମାଲାର ଆଗମନ ତା ଜୀବନର ଜଡ଼ତା ଭାଙ୍ଗିଛି···। ପିଲାଟି ବି ଟିକ୍ ସେହ ପରି, ସୁନ୍ଦର ଚେହେରା···ବର୍ଷ ତିନିଟା ହେବ । ଦେଖିଲେ କିନ୍ତୁ ଲୋଭ ହୁଏ । ଦୁନିଆର ମାଦକତା କଣ ? ଅନ୍ତରର ନିବିଡ଼ତା କଣ କିଛି ଜାଣେନି ସେ । ଶିଶୁ···ତିନୋଟି ବର୍ଷର ଶିଶୁ । ସେ ଜାଣେ ସିପ୍ରା ତାର ମାଆ—ଅଧିର ବାପା କେବଳ ଏତିକି । ତାର ଭିତରେ ଦୁନିଆର ସ୍ନେହ ମମତା ତାର ସୀମିବଦ୍ଧ । ସେ ବନ୍ଧନ ବୁଝେନି । ମନସ୍ତତ୍ତ୍ୱ ବୁଝେନି ।···ବୁଝେ କେବଳ ମାଆ ଓ ବାପା—ବାପାର ଅର୍ଥ ତାକୁ ଜଣା ନାହିଁ । ଖୋଲା ଅନ୍ତରର ଢଳ ତାର ସବୁବେଳେ ଯେମିତି ଅପେକ୍ଷା କରି ବସିଥାଏ ପିତୃତ୍ୱର ଅନାବିଳ ସ୍ନେହ

ଫଲ୍‌ଗୁ ସଙ୍ଗରେ ମିଶି ପ୍ରୟାଗ ସୃଷ୍ଟି କରିବ ବୋଲି । ମାତୃସ୍ନେହରୁ ବଞ୍ଚିତ ନୁହେଁ ମାନା । ତଥାପି ପିତୃ ସ୍ନେହର କାଙ୍ଗାଳ ସେ । ମା ତାର ଲାଳନ ପାଳନରେ ପୁଷ୍ଟ ହେଲେବି ସେ ଅଭାବ ଅନୁଭବ କରେ—ମନେ ମନେ···ମାଆ ପାଖରେ ତାର ପେଟ ପୁରେ । କିନ୍ତୁ ମନ ପୁରେଇବାକୁ ସେ ଯେମିତି ସବୁବେଳେ ପିତୃସ୍ନେହ ଅପେକ୍ଷମାନ··· । ଅସ୍ପର୍ଶ ହୃଏ ଅଧର । ଏତେ ଛୋଟ ପିଲାର ଅନ୍ତର ତଳର ଡାକ । ରକ୍ତର ସମ୍ପର୍କ···କେଡ଼େ ତୀବ୍ର । ଅଧରର ଜଡ଼ ମନ, ଉଦାସୀନ ପ୍ରାଣରେ ଦ୍ୱିତୀୟଥର ପାଇଁ ତରଙ୍ଗ ସୃଷ୍ଟି କରିଥିଲା ମାନା— । ଅତୀତର ସ୍ୱପ୍ନ ଛଟିଗଲେ । ଅବସାଦ ଭାଙ୍ଗିଥିଲା— ଅଧର ଜୀବନର ସାର୍ଥକତା ପିତୃତ୍ୱର ଉପାଦେୟତା ଅନୁଭବ କରିଥିଲା । 'ଯାମସେଦପୁର' ଯାମସେଦପୁର— ଅଧରର ଅବଚ୍ଛିନ୍ନ ଭାବଧାରା ସଙ୍ଗରେ ଯେମିତି ଏକ ଅକ୍ସିଡେଣ୍ଟ ଘଟିଥିଲା ଏଇ ଡାକର । ଟ୍ରେନର ଝରକା ଭିତରେ ଅଧର ମୁଣ୍ଡକାଢି ବାହାରକୁ ଚାହିଁଲାବେଳକୁ ଗାଡ଼ି ଯାମସେଦପୁରର ବିରାଟ ପ୍ଲାଟଫର୍ମ ଭିତରକୁ ମୁଣ୍ଡଗୁଞ୍ଜି ସାରିଥିଲା ।

ସୁକୋମଳ ଗଦିଉପରେ ବସି ମଧ୍ୟ ସେ ବଡ଼ ଅସ୍ୱସ୍ତି ବୋଧ କରୁଥିଲା । ଗୃହମୁଖୀ ଗୃହସ୍ଥର ଚଞ୍ଚଳତା ତା ମନକୁ ଛୁଇଁ ପାରୁନଥିଲା ; ପ୍ରଭାତର ବାଳସୂର୍ଯ୍ୟ ଯାମସେଦପୁରର ଜଡ଼ତା ଭାଙ୍ଗି ଯେମିତି ଅଧରକୁ ଅପେକ୍ଷା କରିଥିଲା ଅଭିନନ୍ଦନ ଜଣାଇବାକୁ । ଅଧର ତାକୁ ସ୍ୱାଗତ ଜଣେଇ ପାରିଲା ନି ! ମାନସର ଭାବରାଜି ତାର ଓଲଟ ହୋଇ ଉଠିଲା ।

ଦଶହରାକୁ ବାପା ଗୋଟାଏ କଳ ଘୋଡ଼ା ଦେବ—ଦଶହରା ଗ୍ଲଲି ଗଲଣି କାଲିଠୁ' କିନ୍ତୁ କାହିଁ···କଳ ଘୋଡ଼ା କେଉଁଠି ?

ହଠାତ୍ ଅଧର ମୁଣ୍ଡକୁ ଗୋଟାଏ ବୁଦ୍ଧି ଫୁଟିଗଲା—ସେ ରିକ୍ସା ବାଲାକୁ ସିଧା ବଜାରକୁ ଯିବାକୁ ନିର୍ଦ୍ଦେଶ ଦେଲା ।

ମାଳା ପାଇଁ କଳଘୋଡ଼ା କିଣା ହେବ । ସାରା ବଜାର ପରିକ୍ରମା ଶେଷ ହେଲା । ବିଭିନ୍ନ କିସମର ଘୋଡ଼ା···କଳା, ଧୂସର, ଧଳା ଇତ୍ୟାଦି—କେଉଁଠାରେ ସବାର ଅଛି ତ କେଉଁଠା ଖାଲି । ଦାମରେ ମଧ୍ୟ ଊଣା ଅଧିକ ଅଛି । କିନ୍ତୁ କେଉଁ ଘୋଡ଼ା ଅଧର କିଣିବ ? ମାଳାର ମନ ପାଇଲେତ·····ଅଧରର ସନ୍ଦେହ ଘନୀଭୂତ ହେଲା । କେଉଁ ଘୋଡ଼ା ସେ କିଣିବ । ମାଳାର ନା ପସନ୍ଦ ହେଲେ ! ଦୋକାନୀର ସମାଧାନ ଅଧର ଗ୍ରହଣ କରି ନେଲା । ଅଷ୍ଟ୍ରେଲିଆନ ମେଡ୍···ମେଣ୍ଟେ ଗ୍ରୁମେଷ୍ଟ୍ରା···ତିନି ପିଲାଙ୍କ ପାଇଁ ତିନିଟା— ।

ବାଟ ଘରେ କୁନା ଆଉ ଡଲି ପେଣ୍ଟ୍ରୁ ଗଢ଼ୁଥିଲେ । ଦ୍ୱାର ବନ୍ଧରେ ହାତ ଦେଇ ସିପ୍ରା ପିଲାଙ୍କ ଖେଳ ଦେଖୁଥିଲା— ଅଧର ଘର ଭିତରକୁ ପଶିଗଲା । ପିଲାଏ ଖେଳ ବନ୍ଦ କରି ଚିତ୍କାର କଲେ—ବାପା ଆସିଲେଣି । ସିପ୍ରା କିନ୍ତୁ ନୀରବ—ଯେମିତି ଏହି ନୀରବତା ଅଭିମାନକୁ କେନ୍ଦ୍ର କରି ମୂର୍ତ୍ତି । ସିପ୍ରାଠାରୁ କଥା ଶୁଣିବାକୁ ଅପେକ୍ଷା ନ କରି ଅଧର ନିଜ ତରଫରୁ ଆରମ୍ଭ କଲା— 'ସ୍ୱୟଂ ଲାଟ ସା ହେବ ଅତିଥି—ଶତ ଚେଷ୍ଟା କଲେବି କାଲି ଆଉ କଟକ ଛାଡ଼ି ପାରିଲିନି ପରିଚାଳନା ଦାୟିତ୍ୱ ପୁରାପୁରି ମୋ ଉପରେ ।' 'ମୁଁ ତ କେବେହେଲେ ତୁମଠୁ କୌଣସି ବିଷୟରେ କୈଫିୟତ ଚାହିଁ ନି'—ସିପ୍ରାର ଜବାବ ଖୋଲ୍‌ଠୋକ୍ ।

“ନା ନା ସେ କିଛି ନୁହେଁ, ମାଳା କାହିଁ ? ତା ପାଇଁ ମୁଁ କଳଘୋଡ଼ା କିଣି ଆଣିଛି ।”—ଅଧରର ଚକ୍ଷୁକୋଣରେ ପ୍ରଶ୍ନସୂଚକ ସଙ୍କେତ ଖେଳି ବୁଲୁଥାଏ ।

ସିପ୍ର ଉତ୍ତର ଦେଲ—ମାମାଙ୍କୁ ବରଂ ସେଇ ଉତ୍ତର ଦେଇ ସାନ୍ତ୍ୱନା ଦିଅ । ପିଲଟା କାଲି ଦିନ ସାରା କାନ୍ଦି କାନ୍ଦି କିଛି ଖାଇନି । କୁନା ହେଉଟା ଦେବୀ ଦେଖିବାକୁ ଗୁରୁର ସାଙ୍ଗରେ ବଜାରକୁ ଗଲେ—ତାର କାନ୍ଦ ସେଇ ଏକା ଜିଦ୍, ବାପା କାହିଁ ? ସେ ବାପା ସାଙ୍ଗରେ ଦଶହରା ଦେଖିଯିବ—ଘୋଡ଼ା କିଣି ଆଣିବ··· ଯେତେ ବୁଝେଇଲି ବୁଝିଲାନି । ଆଖିଅ ଅପିଅ ଘର କଣରେ ବସି ପୁଣି କାନ୍ଦ ଆରମ୍ଭ କରି ଦେଲାଣି······

ଆଉ ଶୁଣିବାକୁ ଅଧରର ଧୈର୍ଯ୍ୟ ରହୁଲାନି···ବିବେକର ଦଂଶନ ତାକୁ ବଡ଼ ଉଲଟ ବୋଧ ହେଲ । କେଡ଼େ ଅନ୍ୟାୟ ସେ କରିଛି । ନିଜର ଶିଶୁ ପୁଅ ପାଖରେ ଅନ୍ୟାୟ··· । ସେ ମାମାକୁ କଥା ଦେଇଥିଲା ଦଶହରା ବଜାରକୁ ତାକୁ ସାଙ୍ଗରେ ନେଇ ଘୋଡ଼ା କିଣି ଦେବ ବୋଲି । ପିତାର ଦାୟିତ୍ୱ ତୁଲେଇ ପାରିଲାନି ସେ । ସନ୍ତାନ-ବାତ୍ସଲ୍ୟ ତାର ମଣିଷ ମନକୁ ଛୁଇଁନି—ଶିଶୁ ପ୍ରାଣର ଅନାବିଳ ଉଦ୍‌ବେଗ, ଆକାଂକ୍ଷା, ଆକର୍ଷଣ ଆଉ ଅନ୍ତରଙ୍ଗତା ପିତୃତ୍ୱ ତାର ଗ୍ରହଣ କରି ପାରିନି । ସେ ଅନ୍ୟାୟ କରିଛି—ଆଉ ଭାବି ପାରିଲାନି ଅଧର ।

ସେ ଝଡ଼ ବେଗରେ ଶୋଇବା କୋଠରୀ ଭିତରକୁ ପଶି-ଗଲା । କୋଠରୀ କଣରେ ମାମା ବସିଛି । ଗଣ୍ଡରେ ତାର ଅଶ୍ରୁର ଶୁଷ୍କ ଦାଗ ।

ମାମା ! ତୋ ପାଇଁ ମୁଁ କଳଘୋଡ଼ା ନେଇ ଆସିଛି—କୋହର ଅତିଶଯ୍ୟ ଗୃପେ ଅଧର କହି ପକାଇଲା । ମାମା କିନ୍ତୁ ନୀରବ—ଶୁଷ୍କ ମୁଖ ତାର ଗମ୍ଭୀର ହୋଇ ଆସୁଥିଲା ।

ଅଧର ଧାଇଁ ଯାଇ ମାଲ୍ଲାକୁ ଛାତି ଉପରକୁ ଟେକି ଆଣିଲା ।

ଉଁ ନାଇଁ, ବାପା ତୁ କାହିଁକି କାଲ୍ ଅସିଲ୍‌ନା ?—ଏଇ କଥା ପଦକରେ ମାଲ୍ଲା ତାର ଅଭିଯୋଗ ଅଗତ କରିଥିଲା । ଅଧର ମାଲ୍ଲାକୁ ଛାତି ଭିତରେ ଆହୁରି ଟାଣରେ ଜାବୁଡ଼ି ଧରି ତାର ଲୁହ-ମିଶା ଶୁଖିଲା ମୁହଁ ଉପରେ ଗୋଟିଏ ଗାଢ଼ ଚୁମ୍ବନ ଅଙ୍କି ଦେଲା ।

ମାଲ୍ଲା ଦୁଇ ହାତରେ ଅଧରର ମୁଣ୍ଡକୁ ଧରି ପକାଇ ପୁଣି ସେଇ ଅଭିଯୋଗ ମିଶା ସ୍ୱରରେ କହିଲା— ବାପା ତୁ କାନ୍ଦୁଚୁ ? ଦରହସିଲା ମାଲ୍ଲାର ଚକ୍ଷୁଯୁଗ ଲୁହରେ ଜୁଡ଼ବୁଡ଼ ଦେଖା ଯାଉଥାଏ । ଅଧରର ନୀରବ ଛାତି ତଳ ଫୁଲି ଫୁଲି ଆସୁଥିଲା ଯେମିତି ।



ଓଆନ୍ ଜରେ ଡାଉନ୍·· ଭୋଂକନାଡ଼ ଏକ୍ସପ୍ରେସ୍ । ପ୍ଲାଟଫର୍ମ ଭିତରକୁ ଧିମେଇ ଆସୁଛି । କାଚ ସଟର୍ ଟେକି କାପ୍‌ଟେନ୍ ଚୌଧୁରୀ ପଦାକୁ ଗୃହିଁଲେ···କଟକ ରେଲୱେ ଷ୍ଟେସନ । ସ୍ବାଧ-ଭିତରେ ଷ୍ଟେସନଟା ଅଦ୍ଭୁତ ରକମର ସମ୍ପୃକ୍ତିବନ୍ତ ହୋଇଛି । କିନ୍ତୁ ନଥିଲା ସେତେବେଳେ । ମାମୁଲି ଷ୍ଟେସନଟାଏ ଥିଲା···ଚନ୍ଦ୍ରନ ଅଗେଇ ଯାଉଛି ସ୍ବାଧ ଭିତରେ ।

ଗାଡ଼ି ଅଟକିଲା···ମଜଦୁର ଲଗେଜ ଧରି କାପ୍‌ଟେନ୍ ଚୌଧୁରୀଙ୍କର ଅନୁଗମନ କଲା କୋଚ୍ ଷ୍ଟାଣ୍ଡ ଆଡ଼କୁ । କୋଚ୍‌ମ୍ୟାନ ସବୁ ଆଗ୍ରହରେ ପ୍ରଶ୍ନ କଲେ— କାହିଁ ଯାଏଙ୍ଗେ ବାବୁଜୀ ?

ଜଣଙ୍କର କୋଚ୍ ଭିତରକୁ ଉଠୁ ଉଠୁ କାପ୍‌ଟେନ୍ ଜବାବ ଦେଲେ – ଆରେ ଚଲୱନା··· ।

କୋଚ ଗୁଳିଲା । ଆଗ୍ରହୀ ଚୌଧୁରୀ ରାସ୍ତାକଡ଼ରେ ଚିହ୍ନା ଅଚିହ୍ନା ଦୋକାନ ବଜାର ଉପରେ ଆଖି ବୁଲେଇ ଗୁଳିଥାନ୍ତି— ଢେର ବଦଳି ଯାଇଛି । ରାସ୍ତାଧାରର ନାଳଟିଆ ସନ୍ତସନ୍ତିଆ ଖାଲଗାଡ଼ାଙ୍କ ଉପରେ ମସ୍ତ ଦୋତାଲା ତନିତାଲା କୋଠାବାଡ଼ି ଛିଡ଼ା ହୋଇଛି । ପ୍ରଗତିର ବ୍ୟାପକ ଅଭିଯାନ···ସୁନ୍ଦର, କେବଳ ହାଇଜନିକ୍ ଜଣାପଡ଼ୁନି ।

ଗାଡ଼ି ଅଗେଇ ଗୁଳିଥାଏ । ଅଗକୁ ରେସ୍ତୁରାଁ । କାପ୍‌ଟେନ୍ ଚୌଧୁରୀ ଅନ୍ୟମନସ୍କ ଭାବରେ ଲକ୍ଷ୍ୟ କଲେ ଦ୍ୱିତଳ ପ୍ରାସାଦଟାକୁ, କିନ୍ତୁ ଚିହ୍ନିଲେ ଅସିଲାନି । ସ୍ୱାଧୀନ—ଭାରତ ରେସ୍ତୁରାଁ···ଆଧୁନିକ ରୁଚିବନ୍ୟାସ । ଆଦବ କାଇଦା ପୁରାପୁରି ଅଲନ୍ଧ୍ରାମଡ଼ର୍ଣ୍ଣ । ପାନଟେସନ୍ ଟେକ୍‌ନିକ୍‌ର ବ ଖିଲାପ ନାହିଁ ସେଠି । ଖସ୍ତା ଅଥଚ ପ୍ଲେଟଗ୍ଲାଡ଼ାଙ୍କ

ଚୂନ୍ଦା ମୁଭାବକ ମିଳେ । ପେଟେର୍‌ସନ୍ କଟଲେଜ ବାରନ୍ଦା ଉପରେ ଚାଲିଗଲାବେଳେ ରେସ୍ତୁରାଁର ସାଇନବୋର୍ଡ ପରିଷ୍କାର ଦେଖାଯାଏ । ବୋର୍ଡରେ ବଡ଼ ବଡ଼ ଦେବନାଗିରୀ ଏବଂ ତା ତଳକୁ ଇଂରେଜୀରେ ଲେଖା 'ସ୍ୱାଧୀନ ଭାରତ ରେସ୍ତୁରାଁ' ପ୍ରାଞ୍ଜଳ ଭାବରେ ପଢ଼ି ହୋଇଯାଏ । ଚମତ୍କାର ଡିଜାଇନ୍‌ରେ ଲେଖା, 'ସ୍ୱାଧୀନ ଭାରତ ରେସ୍ତୁରାଁ' । ଯେମିତି ଗୋଟାଏ ମନସ୍ତତ୍ତ୍ୱର ଅପିଲ୍ ତା ତଳେ ଲୁଚିକରି ରହୁ ଯାଇଥାଏ । କଲେଜରେ ଅଫ୍ କ୍ଲାସ ଗୁଡ଼ାକର ସୃଷ୍ଟି ଯେମିତି ରେସ୍ତୁରାଁ ଅଟେଣ୍ଡ୍ ପାଇଁ ଉଦ୍ଦିଷ୍ଟ । ଅଧ୍ୟାପକ ଅଧ୍ୟାପିକା, ଛାତ୍ରଛାତ୍ରୀ ଯୋଡ଼ ବାନ୍ଧି ଏଠାକୁ ଚାଲିଆସନ୍ତି । ମାମୁଲି ଭୋକ ଶୋଷ ବାଦ୍ ଯାଉ ପଛକେ ଏଟିକେଟ୍ ଭଦ୍ରାମୀସବୁ ଅକ୍ଲେଶରେ ବଜାୟ ରଖେ, ଜି. ପରିମଲ ରାଓ, ରେସ୍ତୁରାଁ ମ୍ୟାନେଜର ।

ବର୍ଷ କଟକ ସହରର କଲେଜ ସ୍କ୍ୱାୟାର୍ ଅଂଚଳରେ ସବୁ ଝଲମଲିଆ ଦୋକାନଗୁଡ଼ାକୁ ଖୋଲା ଚ୍ୟାଲେଞ୍ଜ କରେ ଏଇ ରାଓ ରେସ୍ତୁରାଁ । ମାନସିକ ତୃପ୍ତି, ଇଂରେଜୀରେ ଯାହାକୁ ମେଣ୍ଟାଲ ସାଟିସ୍‌ଫ୍ୟାକ୍‌ସନ୍ କହନ୍ତି ସେଇକ ସ୍ୱାଧୀନ ଭାରତ ରେସ୍ତୁରାଁ ବାଦ୍ ଅଉ କେଉଁଠି ମିଳେନି । ରୁଚିମାର୍ଜିତ ଶିକ୍ଷିତ ସମ୍ପ୍ରଦାୟ ବିଶେଷତଃ କଲେଜ ଗ୍ଲେକର୍ ଯାହାକୁ ଡାବଙ୍ଗ୍ କରେ ଅନ୍ୟର ରୁଚିଗର୍ହିତ ପ୍ରଶ୍ନ ସେଠି ଉଠିପାରେନା । ସଂଜସକାଳରେ ରେସ୍ତୁରାଁଟି ଅସମ୍ଭବ ରକମର ଭିଡ଼ ଧରେ । ସହରତଳି ଅଂଚଳରୁ ଜନତାର ସୁଅ ଛୁଟେ କପେ ଚା ଆଉ ଟିକିଏ ଜଳପାନି ଲାଗି । ମନୋବିଜ୍ଞାନ ଗବେଷଣା ଅଉ ଏଇ ରେସ୍ତୁରାଁର ସାଇନ୍ ସିଲେକ୍‌ସନ ଲାଗି ରାଓଙ୍କୁ ସାବାସ ନଦେଇ ରହି ହୁଏନି । ପୁଣି ରେସ୍ତୁରାଁର ଉନ୍ମୋଚନ କାଳନିରୂପକ ପଣବାର ରାଓ ଆଜୀବନ ସ୍ମରଣୀୟ ଥିବେ ନିଶ୍ଚୟ ।

ସେଇ ସ୍ୱାଧୀନ ଭାରତ ରେସ୍ତୋରାଁ ସମ୍ଭାଧାରରେ ଛୁଡ଼ା ହୋଇଚି । ହେତୁତ ଧନ ଧରି ସେ ସେଇପରି ଦଣ୍ଡାୟମାନ । ପରିବର୍ତ୍ତିନ ଭିତରେ ବିଶ୍ୱବିଦ୍ୟାଳୟ ଅଥବା ସରକାରୀ ପ୍ରଦତ୍ତ ଦାମ୍‌ହୀନ ଉପାଧି ପରି ଭାରତ ରେସ୍ତୋରାଁ ଆଗରେ 'ସ୍ୱାଧୀନ'ର ଯାହା ଯୁକ୍ତି । କାପ୍‌ଟେନ୍ ଚୌଧୁରୀ କିନ୍ତୁ ତାଙ୍କର ପରିଚିତ ରେସ୍ତୋରାଁକୁ ଖିଆଲକୁ ଆଣି ପାରିଲେନି ।

ହୋଟ୍ ରେସ୍ତୋରାଁ ପାଖ ଧରିଲା ।

କାପ୍‌ଟେନ୍ ଚୌଧୁରୀ ପରିହିତ ଉଇଲସନ୍ ଗଗଲ୍‌ସ୍‌ଟାକୁ ନାକ ଉପରୁ ଉସନ୍ତ ଟେକି ଦେଇ ସେଇ ହୋଟ ଭିତରୁ ଲକ୍ଷ୍ୟ କଲେ—ଆରେ ଏ ତ ରେସ୍ତୋରାଁଟା ! ତାଙ୍କ ଜୀବନର ଅତି ପ୍ରିୟ, ଅତି ପରିଚିତ ସ୍ଥାନ । ନାମିକ ପରିବର୍ତ୍ତନଟା ସେ ସେତେବେଳେ 'ମର୍ଣ୍ଣିପୋଷ୍ଟ'ରେ ଲକ୍ଷ୍ୟ କରିଥିଲେ । କାପ୍‌ଟେନ୍ ଚୌଧୁରୀ ହୋଟ୍ ଭିତରକୁ ମୁହଁ କାଢ଼ି ଆଉଟିକିଏ ଉପରେଇ ଗୁହଁଲେ - ପାରାଡ଼ାଇଜ୍ କାବିନ୍, ଠିକ୍ ଯଥା ସ୍ଥାନରେ ଦୋଦୁଲ୍ୟମାନ । ନିଷ୍ପତ୍ତ ବୋର୍ଡ଼ଟା ଟିକିଏ ଇରିହାନ୍ତ ହୋଇପଡ଼ିଚି, ତଥାପି ପାରାଡ଼ାଇଜ୍ କାବିନ୍ ସେ— ସର୍ତ୍ତଙ୍କର···ଭୋଜନାଳୟ···ବ୍ୟବସାୟର ଅପର ସଂସ୍କରଣ । କେବଳ ଖାନା ନୁହେଁ ଲଜିଙ୍ଗ୍‌ର ବ୍ୟବସ୍ଥା ତା ସାଙ୍ଗରେ ଅଙ୍ଗାଙ୍ଗୀ-ଭାବେ ଜଡ଼ିତ । ସାଧାରଣଙ୍କର ଗରାଖି ସ୍ୱୀକାର କରିବାକୁ ମାଲିକ ସର୍ତ୍ତ କେବେହେଲେ ରାଜି ନୁହନ୍ତି । ବିନା ଲଜିଙ୍ଗରେ ଖାଦ୍ୟ-ପେୟର ବ୍ୟବସ୍ଥା କରିବାକୁ ସେ ପସନ୍ଦ କରନ୍ତି ନା । ଅତଏବ ସର୍ତ୍ତ ଟିକିଏ ଚଢ଼ା ହେଲେ ବି କିଛି ଯାଏ ନା । ପୁଞ୍ଜିଦାରୀ, ଲେଫାର, ଦ୍ୱାଗା କିସମର ଗରାଖପାଇଁ ପାରାଡ଼ାଇଜ୍ କାବିନ୍

ସଦା ଉନ୍ମୁକ୍ତ । ପାର୍ଡ଼ାଇଜ୍ କାବିନ୍‌ର ନିର୍ଦ୍ଦିଷ୍ଟ ସଂଖ୍ୟକ କୋଠରୀ ଗୁଡ଼ିକରେ ସେଇମାନଙ୍କର ଅଡ୍ଡା ଜମେ ।

କାପ୍ଟେନ ଚୌଧୁରୀ କୋଚମ୍ୟାନକୁ ଗାଡ଼ି ଅଟକାଇବାକୁ କହିଲେ । ହୁଏ ତ ତାଙ୍କ ମନରେ ଖେଳୁଥିଲା—ସତ କଣ ? ଦୀର୍ଘ ଅଷ୍ଟାଦଶ ବର୍ଷ ପରେ ସେ ଜନ୍ମସ୍ଥାନକୁ ଫେରୁଛନ୍ତି । ବାଟରେ ଗାଡ଼ିଟାଏ ଅଟକିଗଲେ ସତ କଣ ? ବାସିନ୍ଦା ହିସାବରେ ମୋଫସଲ ଗାଁ ମାଟି ତାଙ୍କୁ ବିଲ୍‌କୁଲ ଭୁଲିଯିବଣି । ନିରୁଦ୍ଦିଷ୍ଟ ଚୌଧୁରୀ ଆଜି ଗାଁ ଆଖଡ଼ାରେ କିଂବଦନ୍ତୀ ଭାବରେ ଚର୍ଚ୍ଚିତ ହେଉଥିବେ । ତାଙ୍କ ବେଳର ସଙ୍କୁଟ୍ଟଣ୍ଡ ଗାଁ ରେ ଖୋଜିଲେ ବି ଆଜି ମିଳି ନ ପାରନ୍ତି ! ଅଷ୍ଟାଦଶ ବର୍ଷ···ବିରାଟ ବ୍ୟବଧାନ ! ଇହଲୋକ ପରଲୋକଗତ ସମଷ୍ଟି ଓ ବ୍ୟଷ୍ଟି ଭିତରେ ଗାଁ ତାଙ୍କର ବହୁତ ଆଗେଇ ଯିବଣି ।

ଆଜି ଭିତରେ ସେଟିକି ଧାଇଁଯିବାକୁ କାହିଁକି ସେ ଉଦ୍‌ଗ୍ରୀବ ହେବେ ?

ପାର୍ଡ଼ାଇଜ୍ କାବିନ୍ କାନେ ହୋଗା ବାବୁଜି ?—କୋଚମ୍ୟାନ ପଚାରିଲା ।

ହାଁ—ଅନ୍ୟମନସ୍କ ଭାବରେ କାପ୍ଟେନ୍ ଚୌଧୁରୀ ଜବାବ୍ ଦେଲେ ।

ପାର୍ଡ଼ାଇଜ୍ କାବିନ୍······ରେସ୍ତୋରାଁ ଉପର ମହଲା । କୋଚ୍‌ମ୍ୟାନ୍ ଲଗେଜ୍ ଉଠାଇ କାବିନ୍‌ର କୋଠରୀ ଭିତରକୁ ବୋହି ନେଲା । ସେ ତାର ଭଡ଼ା ଗଣି ସଲାମଟାଏ ମାରି ତା ବାଟରେ ଚାଲିଲା । ଚୌଧୁରୀ କାବିନ୍ କୋଠରୀ ଭିତରକୁ ପଶିଗଲେ ।

ମୁହୂର୍ତ୍ତିକ ଭିତରେ ତାଙ୍କ ଆଖି କୋଠରୀ ସାରା ବୁଲିଗଲା । ସେ ଦେଖି ନେଲେ—ସବୁ ଠିକ୍ ଅଛି, ସେଇ ଟେବୁଲ, ସେଇ ଚୌକି, ସେଇ ମିରର ଓ ଡ୍ରେସିଂ ଟେବୁଲ । ପୁରାପୁରି ଠିକ୍ ଅଛି । ପ୍ରାକ୍ ବର୍ତ୍ତମାନର ବ୍ୟବହୃତ ସେଗୁଡ଼ିକୁ ଯାହା କିଛି ପ୍ରଭାହୀନ କରିଦେଇଛି, ଜୀର୍ଣ୍ଣ କରି ଦେଇଛି । ଭାବିଲେ କିଛି ନୁହେଁ ସେ । ତା ତୁଳନାରେ ବରଂ ସେ ନିଜେ ଢେର ବଦଳିଯାଇଚନ୍ତି । ଉମର ତାଙ୍କର ଢେର ବଢ଼ିଗଲାଣି । ପଞ୍ଚତ୍ରିଶ ବର୍ଷ···କମ୍ ନୁହେଁ ? ତାଙ୍କର ଇଚ୍ଛା ବିରୁଦ୍ଧରେ କେଶ ଦାଢ଼ିଗୁଡ଼ାକ ବର୍ଣ୍ଣାନ୍ତର ଧରିଗଲେଣି । ଯା ଆଗରେ କାବିନ୍ ଅସବାବର ପରିବର୍ତ୍ତନ କିଛି ନୁହେଁ । ଅଧିକନ୍ତୁ ପରିବର୍ତ୍ତନ ଭିତରେ ନୂତନ ଷ୍ଟାଇଲ୍‌ର ବିଜୁଳିପଙ୍ଖା ଖଂଜିଛି ମାଲିକ୍ ···ଚମତ୍କାର ହୋଇଛି ।

ଗୋଟାଏ କାଉଚ ଉପରକୁ ଢଳିପଡ଼ି କାପ୍‌ଟେନ୍ ଚୌଧୁରୀ କୋଠରୀଟାକୁ ତନ୍ନ ତନ୍ନ କରି ନିରୀକ୍ଷଣ କରିବାକୁ ଲାଗିଲେ । ତାଙ୍କର ଦୃଷ୍ଟି ସମକ୍ଷରେ ଭାସି ବୁଲିଲା ଗତସ୍ମୃତ ଅତୀତ···ନଷ୍ଟ ଓ ନିରୀହ ।

ଅତୀତ !

ହଁ ଠିକ୍ ଅଷ୍ଟାଦଶ ବର୍ଷ ତଳର ତାଙ୍କ ନିଜ ଅତୀତ ।

କେତେ ଲଗାଲଗି ଭାବରେ ଏଇ କାବିନ୍ ସଙ୍ଗେ ସଂଶ୍ଳିଷ୍ଟ ଥିଲା ସେ । ପୁରାପୁରି ଥାଉଁ ନ୍ୟୁରିଷ୍ଟାଯାଏ । ପ୍ରତିମାସର ବିଂଶାଧିକରାତ, ତାଙ୍କର ଏଇ କାବିନ୍ କୋଠରୀରେ ବେଳ ସଙ୍ଗେ କଟିଛି—ବେଳ ସଙ୍ଗେ । ସନ୍ଧ୍ୟା ବେଳ ଲମ୍ବା ଲହୁରି ବେଢ଼ ପିନ୍ଧି ପ୍ରମୋଦରେ ବନ୍ଦୀ ହୋଇଛି । ଅଜ ସେ ନିଜେ କଲେଜ ଛାଡ଼ ନିଷ୍କଳଙ୍କ ସମାଜକୁ ମ୍ରିୟନ୍ତ

ନେଇ ଚାଲିଥିଲେ ଦୂରକୁ···ବହୁତ ଦୂରକୁ । ବେଲା ପ୍ରତି ଅବିଚାର କରି ସେ ଦୂରକୁ ଚାଲି ଯାଇଥିଲେ । ଯୌନବିକୃତ ସନ୍ତୁଷ୍ଟିରେ ସମାଜ ଶେଠମାନେ ଆତ୍ମପ୍ରସାଦ ଲାଭ କରିଥିଲେ । ନିଶମୁନ ଗୋଳାପ କରି ଘାଡ଼ଡ଼ କରିଥିଲେ ଦୁଇଟା ଯୁବକ ଯୁବତୀଙ୍କୁ । ସେମାନଙ୍କର ବିଷାକ୍ତିତ ବାଷ୍ପଜାଳାରେ ସେ ପଳ ପଳ କରି ପୋଡ଼ି ଅଙ୍ଗାର ହୋଇ ଯାଇଥିଲେ, ତାଙ୍କର ଶ୍ୱାସରୁଦ୍ଧି ଘଟିଥିଲା । ବିବେକ, ଆଦର୍ଶ, ଆତ୍ମ-ବିଶ୍ୱାସ ସବୁକୁ ଗୋଡ଼ତଳେ ମକଚି, ବେଲା ପ୍ରତି ଅବହେଳା କରି ଅର୍ଦ୍ଧପାଗଳ ଅବସ୍ଥାରେ ସେ ଦେଶାନ୍ତର ହେଲେ । ବିଚାରୀ ବେଲା ! କିଏ ଜାଣେ ବିଚ୍ଛେଦ ପରିବାରର ପଙ୍କିଳ ବାଲାର୍କ ଦୁନିଆ ଭିତରେ ତା ଛୁଇର ସନ୍ଧାନ ପାଇ ନ ଥିବ ! କିନ୍ତୁ କାହିଁ ? କୋଠରୀର କଣ ପରିବର୍ତ୍ତନ ହୋଇଛି ? କାଲି ପରି ସବୁ ଜଣା ପଡ଼ୁଛି । ବେଲା ତାଙ୍କ ଛାତି ଉପରେ ଅଡ଼ୁଆ କେତେ ଲୁହ ଢାଳିଥିଲା । ସେ ଅବିଚାର କରିଚନ୍ତି ବେଲ ପ୍ରତି······ । ବେଲା···ତାଙ୍କ ପିଉସୀ ଝିଅ ଭଉଣୀ ଉଚ୍ଚଶିକ୍ଷିତା ନୁହେଁ, ଅଶିକ୍ଷିତା କହିଲେ ଭୁଲ ହେବ । ଅସହିଷ୍ଣୁ ସମାଜ ତାଙ୍କର ପ୍ରେମକୁ ସ୍ୱୀକୃତ ଦେଲାନି । ସସତ୍ତ୍ୱା ବେଲା ସମାଜର ଲାଲ ଆଖି ତଳେ ଚୁପି ହୋଇଗଲା । ଆଉ ସେ ? ବିଦ୍ରୋହ ନିଶାଣ ପିଟି ନ ପାରି ଯାଯାବର ସାଜି ଆତ୍ମଗୋପନ କରିଥିଲେ ଅତି କାପୁରୁଷର ପରିଚୟ ଦେଇ···ଛି, ଛି,····· । ତଥାପି ମାଟିର ମୋହ···ଜନ୍ମମାଟିର ମୋହ ତାଙ୍କୁ ବାର୍ଦ୍ଧକ୍ୟ ଉପକଣ୍ଠରେ ଅଧୀର କରିଛି ଜନ୍ମଭୂମିର ଟିକିଏ ଦର୍ଶନ ପାଇଁ । ମିଳିଥାନ୍ତା ଜୀବନର ରୁକ୍ଷ ଆଦର୍ଶ ନଇଁ ଯାଇଛି । ସେ·····

କାପଟେନ୍ ଚୌଧୁରୀ ବିବ୍ରତ ହୋଇ ଉଠିଲେ ।

ତାଙ୍କର ରୁଷକଣ୍ଠରୁ ବାହାରି ପଡ଼ିଲା—ବନ୍ଧୁ !

ପୋଷାକ ପିନ୍ଧା ଢଳା ମଚ ମଚ ମରଦଟାଏ ତାଙ୍କ କୋଠରୀ ଆଗରେ ଛିଡ଼ା ହୋଇ ଉଗ୍ରଭ କଣ୍ଠରେ ଉଚ୍ଚାରିଲା – ବାବୁ, କ୍ୟା ଗୃହୁଦ୍ୟ ?

ହା, ଗୃ’ ଆଣ ତ – ଚୌଧୁରୀ ଅଦେଶ ଦେଲେ ।

ଟେବୁଲ ଉପରେ ବସ୍ତୁ ସଜାଡ଼ ଦେଲା ଗୃ’ର ସରଞ୍ଜାମ । ସୁନ୍ଦର ବାସନା । ବାଷ୍ପାୟିତ ପଟ୍ ଭିତରୁ ଗୃ’ର ମତାଣିଆ ଗନ୍ଧ କ୍ୟାପ୍ଟେନ୍ଙ୍କ କାପ୍ଟେନଙ୍କ ଶିରା ପ୍ରଶିରା ଭିତରେ ବିପ୍ଳବ ସୃଷ୍ଟି କରିବାକୁ ଲାଗିଲା । ତଥାପି ତାଙ୍କର ଚନ୍ତାକ୍ରାନ୍ତ ମାନସରେ ରୂପାୟିତ ହୋଇ ଉଠୁଥିଲା—ଇସ୍ ଅଷ୍ଟାଦଶ ବର୍ଷର ଅତୀତ ! ବେଲ ଅଚ୍ଚ ସେ । ଏଇ ମହଲରେ ଅମନ୍ତ୍ରଣ କରିଥିଲେ ଜୀବନର ପ୍ରଥମ ଅଭିସାର । ତା ପରେ ?

ତା ପରେ ସେ ମିଲେଟାରୀରେ ଯୋଗ ଦଅନ୍ତି । ଦନ ଗୁଡ଼କ ବେଶ କଟିଯାଏ । ସବୁ ଭୁଲେଇ ଦଏ ରୁଟିନ୍ ବନ୍ଧା ନିର୍ମମ ମିଲିଟାରୀ କର୍ତ୍ତବ୍ୟ ଆଉ ମଦ । ସବୁ ଭୁଲିଯାନ୍ତି କାପ୍ଟେନ୍ ଚଉଧୁରୀ । ଦୁନିଆର ହିସାବ ରଖିବାକୁ ଫୁରସତ୍ ନ ଥାଏ । ବେଶ୍ ଭଲ ଥିଲ ସେ ଜୀବନ । କିନ୍ତୁ କାହିଁକି ? କାହିଁକି ଏତେ ଦୀର୍ଘ ବ୍ୟବଧାନ ପରେ ଫେରି ଅସିଲେ ? ସବୁ ଭୁଲି ଯାଇଥିଲେ ସେ । ବେଲା ଅଜ ତାଙ୍କ ମନରେ ରେଖାପାତ କରିଛ । ବନ୍ଧୁର, ଗନ୍ତବ୍ୟ ପଥ ତାର କଣ୍ଟକିତ ହୋଇ ସାରିଥିଲ । କଣ ହେଲ ତା ଜୀବନରେ ।

ଚଞ୍ଚଳିତ ହୋଇ ଉଠିଲେ କାପ୍ଟେନ ଚୌଧୁରୀ । ଶିରା ପ୍ରଶିରାର ଶିଥିଳ ତନ୍ତ୍ରୀ ତାଙ୍କର ସଜାଗ ଶକ୍ତି ଅବରିଲେ । ଥିମିତ ରକ୍ତ କଣିକା ବିପରୀର ସଙ୍କେତ ଦେଲେ । ଅଷ୍ଟାଦଶ ବର୍ଷର ତଳର

କଥା—ବିଗତ ଯୌବନର ଚେତନା ତାଙ୍କ ଦେହରେ ସୃଷ୍ଟି କଲା ରୋମାଞ୍ଚର ପୁଲକ । ଖେଳି ଆଉ ସେ ସୃଷ୍ଟିର ଅଗୋଚରରେ ଗାଇଥିଲେ ପ୍ରେମର ପ୍ରଥମ ଆବାହନୀ ଏଇ ମହଲରେ ସେ ଦିନ···। ଆଉ ଭାବି ପାରିଲେନି କାପ୍ଟେନ୍ ଚୌଧୁରୀ । ଗ୍ଲ’ଗୁଡ଼ାକ ବିଲ୍‌କୁଲ୍ ଥଣ୍ଡା । ତା ଅଢ଼ିକି ଇମା ନଜର ନାହିଁ । ସେ ବ୍ୟାଗ ଖୋଲି ଟାଣି ଆଣିଲେ ଗୋଟାଏ ବିଦେଶୀ ବୋତଲ—ହ୍ୱାଇଟ୍ ହର୍ସ । ଢକ୍ ଢକ୍ କରି ମନଇଚ୍ଛା ପିଇଗଲେ ଚାଖ୍···ପୂର୍ବପରି ଖାଟର ଉପରକୁ ଢଳି ପଡ଼ିଲେ ସେ । ଅସ୍ତ ସୂର୍ଯ୍ୟର କେଇମୁଠା ଅଲକ୍ତା ଭାଙ୍ଗିଲେଣି ଖଗ ଝରକା ଫାଙ୍କ ଦେଇ କୋଠରୀର ଭିତର କାନ୍ଥରେ ବିଛୁରି ଯାଇଥିଲା । ଧ୍ୟାନମଗ୍ନ ଚୌଧୁରୀ ଚକ୍ଷୁ ବୁଜି ଖାଟନ୍ ଉପରେ ପଡ଼ି ଯାଇଥିଲେ । ଅସ୍ତରାଗ ଉପଭୋଗ କରିବାର ଖାତିର୍ ତାଙ୍କ ମନରେ ନ ଥିଲା ।

ଖ୍ୱାବ ଭିତରେ ତିନିଘଣ୍ଟା କଟି ଗଲଣି । ସାରା କୋଠରୀ ବିଦ୍ୟୁତାଲୋକରେ ଉଦ୍ଭାସିତ । କାପ୍ଟେନ୍ ଚୌଧୁରୀ କିନ୍ତୁ ପୂର୍ବପରି ପଡ଼ି ରହିଚନ୍ତି । ଖଟ ଉପରେ ବିଛଣା ସଜାଡ଼ୁ ସଜାଡ଼ୁ ବୟ୍ ପଚାରିଲା—ବାବୁ, ଖାନା ରେଡ଼ି ହେଲଣି । ମେଁ ବୁକ୍ ର ଦେ···ନା ନା ମୋ ଦେହ ଖରାପ, ମୁଁ କିଛି ଖାଇବିନି । ତା ଛଡ଼ା ଅନ୍ୟ ବ୍ୟବସ୍ଥା କିଛି ଅଛି ?—ହିନ୍ଦ ଗ୍ଳଡ଼ ଓଡ଼ିଆରେ ପଚାରିଲେ କାପ୍ଟେନ୍ ଚୌଧୁରୀ ।

ବାବୁ, ହ୍ୟା···ହ୍ଲେଇସ୍କି ?—ବୟ୍ ପଚାରିଲା ।

ହଁ—ଚୌଧୁରୀ ଉତ୍ତର ଦେଲେ । ସ୍ୱପ୍ନାନ୍ୱିତ ଚକ୍ଷୁକୋଣରୁ ତାଙ୍କର ଉକୁଟି ଆସୁଥିଲା ରକ୍ତରେଣୁ । ଘୁମନ୍ତ ମୁଖମଣ୍ଡଳ ଚେତନା-

ଲହରି ସୃଷ୍ଟିକରିଥିଲା । ଝରଣା ସଙ୍ଗୀତ ସାର ବାହାରକୁ ଚାଲିଗଲା ବେଳେ ବନ୍ଧୁ କହିଲା—ସରକାର ଅଭି ଫେରୁଚି ମୁଁ ।

କାପ୍‌ଟେନ ହସି ଉଠିଲେ—ବନ୍ଧୁ ଓଡ଼ିଆ ସଙ୍ଗେ ମିଶେଇ ହିନ୍ଦି କହୁଚି ।

ନାଁ ଅଛି ପାର୍ଡ଼ାଇଜ୍ କାବିନ୍‌ର । ମାଲ୍ ଖର୍ଚ୍ଚା କଲେ ସେଠି ମାଲ ମିଳେ । ସୁନ୍ଦର ବ୍ୟବସ୍ଥା—ବାଟୋଇ ଦାଣ୍ଡୋଇଙ୍କର ତ ପୂର୍ଣ୍ଣ ସଉକ୍ ଅଛି, ମରଜି ଅଛି··· ପ୍ରାଣ ଅଛି ।

ତରୁଣୀଟିଏ । ଉତ୍ତର ଷୋଡ଼ଶୀ ଅନୁମିତ ହୁଏ କିନ୍ତୁ ବିଂଶାଧିକା ନୁହେଁ ।

କୋଠରୀର ଦ୍ୱାରଦେଶକୁ ଅଜଣା ଛୁଆ ହେଲା । ବାହାରୁ ଟାଣି ଗଲା ଶୁଣାଇ ବନ୍ଧୁ କହିଲା—ସରକାର ମୁଁ ଆସେ ।

ଆଖି ଖୋଲି ଚାହିଁଲେ କାପ୍‌ଟେନ୍ ଚୌଧୁରୀ । ବନ୍ଧୁ ଚାଲିଗଲାଣି । ଉନ୍ମୁକ୍ତ କୋଠରୀର ଦ୍ୱାର ଦେଶରେ ସୁଦର୍ଶନୀୟା ତରୁଣୀଟିଏ ଦଣ୍ଡାୟମାନା । ଇଲେକ୍‌ଟ୍ରିକ୍‌ର ତେରଛା ଆଲୋକ ସମ୍ପାତରେ ଜଳି ଉଠୁଚି ତା'ର ପରିଧେୟ ଶାଢ଼ୀ ଖଣ୍ଡିକ ! ଇମିଟେସନ ସିଲ୍‌କ୍ ଶାଢ଼ୀ ହେବ । ଶବଳିତ···ଡିଜାଇନ୍ ଅତି ଅପ୍‌-ଟୁ-ଡେଟ୍ । ଚମତ୍କାର ଦେଖାଯାଉଚି । କାପ୍‌ଟେନ ଚୌଧୁରୀଙ୍କର ଘୂର୍ଣ୍ଣନ୍ତ ଚକ୍ଷୁଦ୍ୱୟ ଆଉ ଅଧିକ ସୌନ୍ଦର୍ଯ୍ୟ କିଛି ଉପଭୋଗ କରିପାରିଲାନି । ସେ କାଉଚ ଛାଡ଼ି ଉଠିବାକୁ ବସିଲେ । କାଉଚ ଛାଡ଼ୁ ଛାଡ଼ୁ କହିଲେ—ଅନ୍ଦର ଆଓ, ଅନ୍ଦର ଆଓ··· ।

ତରୁଣୀଟି ପୂର୍ବପରି ନିଶ୍ଚଳା, ନିରୁତ୍ତରା ।

ଚୌଧୁରୀ ତରୁଣୀ ନିକଟକୁ ଆଗେଇ ଗଲେ । ଅସଂଯତ ତାଙ୍କର ପଦକ୍ଷେପ, ଗତି କିନ୍ତୁ ବେଶ ଖାଡ଼ାରସ୍ଥାନ । ତାଙ୍କର ଶିଥିଳ ବାମହସ୍ତକୁ ତରୁଣୀର କଟିବନ୍ଧ ଉପରେ ବୁଲାଇଆଣି ତାକୁ ବକ୍ଷଣା ନିକଟକୁ ଟାଣିନେଲେ ସେ । ତାଙ୍କର ବାଦଶାହୀ ମିଜାଜ ଦାରୁଦ ଦେଇ ମଝିରେ ମଝିରେ କେବଳ ସଂବୋଧନ କରୁଥିଲା—ଅଓ ମେଷ ସ୍ୱୀମୀ, ଅଓ...... ।

ମୁହଁ ଉପରୁ ଓଢ଼ଣା ଖସିଯାଇ ଦୀପ୍ତ ଆଲୋକରେ ଝଲସି ଉଠିଲା ଗୋଟାଏ ମୁହୂର୍ତ୍ତ ଭଳି । ଚୌଧୁରୀ ଚମକ ପଡ଼ିଲେ । ସ୍ତବ୍ଧମନ ତାଙ୍କର ପ୍ରକୃତସ୍ଥ ହେଲାପରି ଜଣାଗଲା । ବିସ୍ମୟ ବିସ୍ଫାରିତ ନେତ୍ର ତାଙ୍କର ପଲକସ୍ଥାନ ଧରିଗଲା । ମନ୍ଥାକୃଷ୍ଟ ଚକ୍ଷୁନାସୀରେ ଅବ୍ୟକ୍ତ ଇସାରା ଦେଇ କାପ୍ଟେନ୍ ଚିତ୍କାର କରି ଉଠିଲେ—ବେଲା, ତୁ ଏଠି ?

ମୁଁ ବେଲା ନୁହେଁ, ମୋ ନାଆଁ ରେଖା—ତରୁଣୀଟି ଉଚ୍ଚ-କଣ୍ଠିତ ସ୍ୱରରେ ଉତ୍ତର ଦେଲା । ରେଖା ? ମିଛକଥା—ପୁରା ମିଛ, ମୁଁ କିଛି ଶୁଣିବିନି—କହି ଚୌଧୁରୀ ତରୁଣୀକି ଘାତ ଉପରକୁ ଆଉଜାଇ ନେଲେ । 'ହ୍ୱାଇଟ ହର୍ସ'ର କଡ଼ା ଡୋଜ୍...ଦାଲ୍ ବିଲକୁଲ୍ ମଜଗୁଲ, ଅନେକବେଳ ଆଗରୁ ବାହ୍ୟଜ୍ଞାନ ହରେଇ ସାରିଥିଲେ କାପ୍ଟେନ ଚୌଧୁରୀ ।

ପରଦିନ ଭୋର ସାତଟା ।

ଟଟକା ଖବରକାଗଜ ପାଉଁଡାଇଙ୍ଗ୍ କାବିନ୍‌କୁ ତାଉଂସ କରି ତୋଳାଟ । ରାଜପଥ ଉପରୁ ଦୃଷ୍ଟି ସଂଗ୍ରହଣ କଲେ ପାଉଁଡାଇଙ୍ଗ୍ କାବିନ୍ ଟିକ୍ ଟିକ୍ ମାରେ । ଏପର୍ଯ୍ୟନ୍ତ ବିଛଣାରେ କାପ୍ଟେନ୍ ଚୌଧୁରୀ ପଡ଼ିଛନ୍ତି, ଏବେ ବି ତାଙ୍କର ନିଦ୍ରା ଭାଙ୍ଗିନି ।

ଦ୍ୱାର ଢଡ଼ରେ ଛୁଡ଼ା ହୋଇ ବସ୍ତୁ ଡାକିଲା—ବାବୁ···ନସ୍ତା ସରକାର···?

ଚୌଧୁରୀ ଅଳସ ଭାଙ୍ଗିଲେ କର ଲେଉଟାଉ ଲେଉଟାଉ । ସେ ଆଖି ମଳି ଚାହିଁଲେ···ପରିଷ୍କାର ଦିନ ହୋଇଗଲାଣି ହ୍ୱାଇଟ ହର୍ସ'ର ଚେମ୍ବର ଅନେକଟା କମିଯାଇଛି ! ବଡ଼ ନିସ୍ତେଜ ବଡ଼ କ୍ଲାନ୍ତ ଜଣାପଡ଼ୁଚନ୍ତି ସେ । ଯୁଆର ଭିତରେ କଟିଯାଇଚି ଗୋଟାଏ ବିରାଟ ରାତି । ବେଲା··· ? କଣ ସ୍ୱପ୍ନ ଦେଖିଲେ ସେ ? ଅଷ୍ଟାଦଶ ବର୍ଷ-ତଳର ବେଲା ତେବେ କଣ ତାଙ୍କର ସ୍ୱପ୍ନପାଶରେ ଆବଦ୍ଧ ଥିଲା ? ନିଜକୁ ବିଶ୍ୱାସ କରି ପାରିଲେନି କାପ୍ଟେନ ଚୌଧୁରୀ । ଅତି ଅହେତୁକ ଭାବରେ ସେ ଯେମିତି ମନକୁ ମନ ଉଚ୍ଚ ଗଳାରେ ଡାକିଦେଲେ—ବେଲା ?

ଓ, ମେଡ଼୍ ସର୍ଭେଣ୍ଟକୁ ଡାକୁଚନ୍ତି ସରକାର ? ମୈ ଅଭି ଡାକ ଦେଉଚି—ମନକୁମନ କହୁ କହୁ ବସ୍ତୁ କୋଠରୀ ଦ୍ୱାର-ଦେଶରୁ ଚାଲିଗଲା, ଯେମିତି କାପ୍ଟେନ୍‌ଙ୍କର ମୁଖ ନିଃସୃତ ଆଦେଶ ପାଇଁ ଅପେକ୍ଷା କରିଥିଲା ସେ । ବେଲା ? ମେଡ଼୍ ସରଭେଣ୍ଟ ?

ବସ୍ତୁର ଗତିବିଧି କିଛି ଠଉରେଇ ପାରିଲେନି କାପ୍ଟେନ ଚୌଧୁରୀ । ସବୁ ଯେମିତି ତାଙ୍କୁ ପ୍ରହେଳିକାମୟ । ହ୍ୱାଇଟ୍‌ହର୍ସ'ର ଚେମ୍ବର ବିଲକୁଲ କମି ଯାଇଚି···ବିଲ୍‌କୁଲ୍ । ସେ ପୁରାପୁରି ପ୍ରକୃତସ୍ଥ । ରେଖା···ଗତ ରାତିର ରେଖା ତାଙ୍କ ମନକୁ ଛମା ଛୁଇଁ-ପାରିନି । ଝିଟକ ତଳର ଭାବନା ତାଙ୍କୁ ପୁରା ଅବାସ୍ତବ ଜଣାପଡ଼ୁଚି । ଅତୀତର ବେଲା ଆଜି କଣ ତାଙ୍କର ସ୍ୱପ୍ନନାୟିକା ସାଜିଥିଲା ତେବେ ? ବସ୍ତୁ ତାଙ୍କୁ ଥଟ୍ଟାକରି ପଚାରିଲା·····? ମୋତେ ଡାକିଲେ ସରକାର ?

ଚୌଧୁରୀ ପୁରାପୁରି ଅପ୍ରସ୍ତୁତ । ସେ ଅଗନ୍ତୁକା ମୁହଁକୁ ବଲ୍ ବଲ୍ କରି ଚାହିଁଲେ କେବଳ ।

ଅଗନ୍ତୁକା ପୁଣି କହିଲା— ମୋ ଦେଇ କିଛି କାମ ଥିଲା ?

ତମ ଦେଇ ? କାପ୍ଟେନ୍‌ଙ୍କର ଅହେତୁକ ବିସ୍ମୟ ରୂପ-ରେଖ ନେଲା ।

ହଁ ହଁ ମୋ ଦେଇ, ମୋତେ ଡାକି ପଠେଇଥିଲେ ନା ? ମୋରି ନାଁ ନେଲା । ଅତି ସରଳଭାବରେ ଅଗନ୍ତୁକା କହିଗଲା ।

ବିଛଣା ଉପରୁ ତଳକୁ ଓହ୍ଲାଇ ପଡ଼ିଲେ କାପ୍ଟେନ୍ ଚୌଧୁରୀ । ମୁହୂର୍ତ୍ତିକ ଭିତରେ ତାଙ୍କର ଚକ୍ଷୁ ହୋଟେଲ ମେଡ଼୍ ଉପରେ ବୁଲିଗଲା—। ଇସ୍, କିଏ ହୋଟେଲ ମେଡ଼ ? ଏଇତ ତାଙ୍କରି ବେଲା । ଯୌବନ ଖସି ଯାଇଛି, ଚକ୍ଷୁର ଜ୍ୟୋତି ଏବଂ ନାସିକାର ପାର୍ଶ୍ୱଭାଗ ରେଖାଙ୍କିତ ହୋଇ ଯାଇଛି, ମୁଖଶ୍ରୀମ୍ଳାନ ପଡ଼ିଛି ; ତଥାପି···ତାଙ୍କର ଅତୀତର ବେଲା ଇଏ ।

ବେଲା···—ଚୌଧୁରୀ ମେଡ଼୍ ଉଦ୍ଦେଶ୍ୟରେ ଆଗେଇ ଆସିଲେ । ତମେ ଆସିଛ ? – ବେଲାର ଅଶ୍ରୁଳ ଚକ୍ଷୁ ଯୁଗ ଯ୍ଭଁଯ୍ଭଁ ନଇଁ ଆସିଲା । ହଁ ବେଲା, ଅଠର ବର୍ଷପରେ ଆଜ ଫେରିଛି । ଚୌଧୁରୀଙ୍କର ଭଙ୍ଗା କଣ୍ଠ ଭିତରୁ ଏତିକି ଶୁଣାଗଲା କେବଳ ।

କାହିଁକି ? କାହିଁକି ପୁଣି ଅଠର ବର୍ଷ ପରେ ଏ କଳଙ୍କିତ ଜୀବନ ନେଇ ଏଠିକି ଫେରି ଆସିଲ ତମେ ? ପୁଣି···ଆଉ କଣ କହିବାକୁ ଯାଉଥିଲା ବେଲା, ମାତ୍ର ଅଶ୍ରୁଳ ଆବେଗ ତାର କଣ୍ଠ ରୁଦ୍ଧ କଲା ଯେମିତି । ସେ ଅତି ଅବୋଧ୍ୟ ହୋଇ 'କାପ୍ଟେନ ଚୌଧୁରୀଙ୍କ ଆଗରେ ଛିଡ଼ା ହୋଇ ରହିଲା ।

ଅବାକ୍ ଚୌଧୁରୀ ଅବହେଳିତ ଅତୀତ ଅଡ଼କୁ ମନ ଫେରାଇ-ବାକୁ ଯାଇ କେବଳ କହିଲେ—ବେଲା !

ପୁଣି କଣ କହିବ ? କିଛି ନାହିଁ ତମର କହିବାକୁ । ରେଖା ତମ ଜୀବନରେ କାଳ ବେଳାର ଭ୍ରମ ଦେଲା ନା ? ଦୁନିଆର ସବୁ ମଣିଷଙ୍କ ଆଖିରେ ରେଖା ମୋର ବୀର ନାରୀ । ତଥାପି···ତଥାପି ରେଖା ମୋର ଗର୍ଭଜାତ ଶିଶୁ, ତମର ଝିଅ ସେ···ଝଡ଼ରାତରେ କହି ଗଲାଥିଲା ବେଲା ।

ନିର୍ଜୀବ ଚୌଧୁରୀଙ୍କର ଅବହେଳିତ କଣ୍ଠରୁ ଆଉ ଥରେ ଶୁଭିଲା—ବେଲା ! ! :

ତମର କାପୁରୁଷତାକୁ ଗୋଡ଼ରେ ଆଡ଼େଇ ଦେଇ ଶେଷକୁ ଏଇ ପନ୍ଥା ମୁଁ ବାଛି ନେଇଥିଲି—ବେଶ ଭଲରେ ଥିଲି । ତମେ କିନ୍ତୁ କଣ କଲ ଆଜ ?

ଧୂମକେତୁ ପରି ଦେଖା ଦେଇ···ବେଲା ଆଉ କିଛି କହି ପାରିଲାନି । ଛଳ ଛଳ ଚକ୍ଷୁ ଯୁଗରୁ ଝରି ପଡ଼ୁଥିଲା ଅଶ୍ରୁର ଅବିଶ୍ରାନ୍ତ ପ୍ରବାହ । ଯୁଗର ଭିତରେ, ଠିକ୍ ଯୁଗର ଭିତରେ କୋଡ଼ିଏ ବର୍ଷ ଯେମିତି କାଟିଦେଲା ଚୌଧୁରୀଙ୍କର ବୟସ ଆଗେଇ ଯାଇଛି । ବାର୍ଦ୍ଧକ୍ୟର କାରୁଣ୍ୟ ଆଉ ଦୁର୍ବଳତା ତାଙ୍କର ସାରା ତନୁକୁ ଅଧୋର କରିଛି । ସେ ଅତି ଅସହାୟ···ଅତି ବିବର୍ଣ୍ଣ ଧରି ଯାଇଛନ୍ତି । ଅପରାଧୀ ବାଳକଟି ପରି ସେ ବେଲା ଆଡ଼କୁ ହାତ ଯୋଡ଼ି ଆଗେଇଗଲେ । ଅତି କାତର୍ କଣ୍ଠରେ ଅନୁନୟ କରି ସେ କହିଲେ—ସତରେ ବେଲା, ନରକର କୀଟ ମୁଁ···ଜୀବନ୍ତ କୀଟ । ତୋରି ଅଖି ଯନ୍ତ୍ରଣାରେ ବାହାରି ପାରୁଚି, କେହି ଜାଣିବନି – ତଥାପି ମୋ ପାପର ପ୍ରାୟଶ୍ଚିତ୍ତ ନାହିଁ ବେଲା !··· ।

ଚୌଧୁରୀଙ୍କର ବାସ୍ପାକୁଳ ଚକ୍ଷୁ ପ୍ରାନ୍ତ ତରଳ ଆସୁଥିଲା । ଶରୀରରେ ଶୀହରଣ ଖେଳିଯାଉଥିଲା । ବେଲା ଚୌଧୁରୀଙ୍କ ପାଖକୁ ଲଗି ଆସିଲା । ସେ ଲୋତକାପ୍ଲୁତ କଅଁଳକଣ୍ଠରେ ପଚାରିଲା—କୁଆଡ଼େ ଯିବ ତମେ···?

କାପ୍ଟେନ ଚୌଧୁରୀଙ୍କର ବୁଦ୍ଧି ନିର୍ବୋଧ ଓ ନିର୍ବାକ୍ ।

ହଠାତ୍ ରାଜପଥ ଉପରେ ଯାଉଥିବା ଗୋଟାଏ କାର୍ ରେସ୍ତୋରାଁ ଆଗରେ ଠିଆ ହେଲା । ଜଣେ ଯୁବକ ମୋଟର ଭିତରୁ ପଦାକୁ ଓହ୍ଲାଇ ପଡ଼ିଲେ । କାର ଭିତରୁ କିଏ ପଚାରିଲା—ତମେ କଣ ଏଇଠି ରହିଯିବ ?

ହଁ—ଆଗନ୍ତୁକ ଜୋର ଗଳାରେ କହିଲେ ।

ଚାହିଁଲା ଗଲା ଠକରେଇ ବେଲା ଝରକା ଅଡ଼କୁ ମୁହଁ ବୁଲେଇଲା । ଯୁବକଟି ରେସ୍ତୋରାଁ ଅଡ଼କୁ ମୁହାଁଉଥିଲେ ···ପାସ୍-ତାଇଙ୍କ ଜୀବନ୍ ଉଦ୍ଦେଶ୍ୟରେ ?

—o—

ଆଜି ନୁହେଁ ।

ତନିବର୍ଷ ଧରି ମୁକୁତା ନବୀନାକୁ ଦେଖି ଅସୁଚି । ମନପ୍ରାଣ ଦେଇ ସେ ନବୀନାକୁ ନିଜର କରି ଅସିଚି । କେଡ଼େ କାଠୁଆ ମଣିଷ ଏଇ ନବୀନା ସତେ ! ସେ ହାତ ଧରି ମୁକୁତାକୁ ବାହା ହେଲା । ତାହାଙ୍କ ସେ ବାହା ହେଲା ? କେତେ ନୂଆ ବାହାହେଲା ବୁଅବହୂ ଜଣ ସେ ଗାଁରେ ଦେଖି ଆସିନି । ଧନବନ୍ତ ଅଶ୍ଳୋନି— କାମଦାମ ସତେଇଦେଇ ସବୁବେଳେ ଜଣ ଯେମିତ ଘର କଣରେ ଫୁସୁର ଫୁସୁର ନଗେଇ ଥାନ୍ତି । ଏଇଥିନାଗି କେତେତେ ଘରର ଶାଶୁନଣନ୍ଦ ପୁଅକୁ ଦେଖେଇ, ବହୂକୁ ଶୁଣେଇ କେତେ ଘଟଣ ଅଘଟଣ କଥା କହନ୍ତି, କେତେ ଖୁଣ୍ଟା ଦଅନ୍ତି··ଗାଁଅ ଲୋକେ କହନ୍ତି ବାହାଘର ମଗଇନଡ଼ୁ, ଖାଇଲେ ସମସ୍ତଙ୍କ ମନ ଯେମିତ ଧରେ । ମାଅ ଭଉଣୀ ଶାଶୁ ନଣନ୍ଦଙ୍କ କଥା ଶୁଣିବାକୁ ଫୁରୁସତ ମିଳେନି ।

ମୁକୁତା କିନ୍ତୁ ବିପରୀତ ଦେଖେ । ତା ଘରେ ଶାଶୁ ନଣନ୍ଦ ତାଅଇଜଲ କେହୁ ନାହାନ୍ତି । ଭଲରେ ମନ୍ଦରେ ତାକୁ ପଦେ ଡିଅରି କହିବାକୁ ତା'ଘରେ ଲୋକ ନାହାଁ—ଗାଳି ଦୋଲଣା ବା କିଏ ଦଉଚି । ସାଙ୍ଗ ସାଥିମାନେ ବାହାଘର ବେଳେ ମୁକୁତା କାନରେ ଏଇକଥା କେତେ କହୁଥିଲେ—ନଗେଇ ଯୋଟେଇ ପଦେ ଖୁଣ୍ଟା ଦବାକୁ କେହୁ ନାହାଁ, ବର ଏକଲା—କେଡ଼େ ଗେଲ-ବସର ହେଇ ଦନ କାଟିବୁ ଲୋ ମୁକୁତା ! ଅଜଣା ଭବିଷ୍ୟତ ଉପରେ ମୁକୁତାର ଅକ୍ତିଆର ନ ଥାଏ । ସାଙ୍ଗ ସାଥିମାନଙ୍କ କଥାର ଦାମ୍ ଠଉରେଇ ପାରେନି ସେ । କେବଳ ଏଇ ଥଟ୍ଟା ପରିହାସ ଭିତରେ ସେ ଯେଉଁ ନୀରବ ଅନନ୍ଦ ଟିକି ପାଏ, ସେ କଥା ସେ ଏକା ଜାଣୁଥିଲା । କିନ୍ତୁ ଥାନ ମୁଣରେ ପହଞ୍ଚି ମୁକୁତା ସବୁ ବିପରୀତ ଦେଖି ଗଲିଚି ।

ଭୁଇଁ ଶୁଖିଗଲେ ନବୀନା ଅଚେତ ହୋଇଯାଏ । ଦିନମାନର ଗୋଟାଏ ମନ୍ତ୍ର—ହାଡ଼ଭଙ୍ଗା, ଝାଳବୁହା । ବିଶ୍ରାମ ଟିକକପାଇଁ ଅବକାଶ ନାହିଁ, ବେଳ ନାହିଁ । ଫସରଫଟା ବେଳ ଜାଙ୍ଗୁଲି ଜାଙ୍ଗୁଲି ରାତି ପାହୁ ଆସୁଥିବ, ନବୀନା ଦେହ ମୋଡ଼, ହାତଗୋଡ଼ ଛାଟି ଅଳସ ଭାଙ୍ଗେ । ମୁହଁରେ ପାଣି ଟୋପାଏ ପକାଇ ଦବାକୁ ସେ ମନ କରେନା । ଦରପୋଡ଼ିଲା ପଥା ପିକାଟାକୁ ଚୁଲ ଦେହରୁ କାଢ଼ି ଆଣି ସେ ଚୁଲିମୁଣ୍ଡେ ବସେ । ଚୁଲିରେ ନିଆଁ ଦିଆଯାଏ । କେଉଁଦିନ ଚୁଲିରେ ନିଆଁ-ଥିଲେ କେଉଁଦିନ ନଥାଏ । ନିଆଁ ଥିଲା ନଥିଲାକୁ ନବୀନା ଭାବେନା କାରଣ—ଏଥିଲାଗି ବୋପା ଦେହଙ୍କର 'ଝଙ୍କମକି' ନବୀନା ଘରେ ସାଇତା ରଖିଛି । ସେ ସଅଳ ସଅଳ ପେଡ଼ି ଦେହରୁ ସୋଲ ପଥର ଆଉ ଲୁହାପାତ ଖଣ୍ଡିକ ଟାଣିଆଣେ । ଏଥିରେ ଦୁ'ଚାରିଥର ଚେଷ୍ଟାକଲେ ଟୋଲଖଣ୍ଡି ନିଆଁ ଧରିଯାଏ । ଦର ପୋଡ଼ିଲା ପିକାଟାକୁ ମୁହଁରେ ଗୁଞ୍ଜି ପୁଣି ନବୀନା ତହିଁରେ ନିଆଁ ଧରାଏ । ତାପରେ କୋଷାଖୋଳ ଭିତରେ ସୋଲର ନିଆଁ ମୁହଁଟା ପୂରେଇଦେଲେ ତହିଁରୁ ନିଆଁ ଲିଭିଯାଏ । ପଥର ଓ ଲୁହାର ସଂଘର୍ଷରେ ନିଆଁର କିପରି ଉତ୍ପତ୍ତି ହୁଏ, ପୁଣି ସୋଲର ନିଆଁ ମୁହଁ କୋଷାଖୋଳ ଭିତରେ ପଶିଲେ ନିଆଁ କିପରି ନିଭେ, ସେ କଥା ନବୀନା ଜାଣେନା କିଂବା ଜାଣିବାକୁ କେବେ ଚେଷ୍ଟା କରିନି । ବୋପା ଦେହଙ୍କର ଚଳଣି ଏଇଟା···ସେ ପିଲାରୁ ଦେଖି ଆସୁଛି । ଏଇ ଝଙ୍କମକି, ଦା ବୋପା ନିଆଁ ବାହାର କରୁଥିଲା, ପିକା ଖାଉଥିଲା । ସେ ସେଇ ବାଟ ଧରିଛି । ବାଟ ପୁରୁଣା । ହଉଥିଲା···ହବ ।

ଏଠି ଅଗ୍ନିର ଉତ୍ପତ୍ତି ଓ ଲୁପ୍ତି ନେଇ ମନ୍ତ୍ର ଖେଳାଇବା ନିରର୍ଥକ । ଅସାଧାରଣ ମଣିଷଙ୍କ ପକ୍ଷରେ ସେଇଟା ସମ୍ଭବପର ।

ନବୀନା ଅତି ସାଧାରଣ ମଣିଷ । ପଲ୍ଲୀ ଗାଁଆର ସ୍ନେହକାତର ଗୃହସ୍ଥଟିଏ । ସେ ଜାଣେ ତାର କେତେ ମାଣ ଚାଷ ଜମି । ତହିଁରେ କେତେ ବିହନ ପଡ଼ିବ । କିମିତି ଯାଗରେ ଚାଷ ହବ । ଫସଲ ଫଳିବ । ଆଉ ସେ ଚିହ୍ନେ ତା ଲଙ୍ଗଳ ଯୁଆଳି, ହଳପଟି ବଳଦଙ୍କୁ । ବାହାର ଦୁନିଆ ସାଙ୍ଗରେ ନବୀନାର ସମ୍ପର୍କ ଅତି ଅଳ୍ପ । ପୁଣି ନିହାତି ଅଦରକାରରେ ନୁହେଁ । ବାବୁ ହାକିମ ଦେଖିଲେ ତା ଛାତି ଥରିଉଠେ । ସରକାରୀ ଘର ଲୋକ । ଭଲମନ୍ଦ କେତେବେଳେ କଉ କଥା । ତୁଣ୍ଡ ଫୁଟିଲେ ହାକିମ କବଳରୁ ମଣିଷକୁ ରକ୍ଷା ମିଳେନି ।

ଦରପୋଡ଼ା ପିକା ଖଣ୍ଡିକରୁ ଧୂଆଁ ଟାଣୁ ଟାଣୁ ନବୀନା ଝାମ୍ପି ପାଞ୍ଚଣ ହାତରେ ଧରି ଗୁହାଳକୁ ଚାଲିଯାଏ । ଗୋରୁ ଦିଟା ମୁହଁକୁ ମୁହଁ ଦେଇ ଶୋଇଥାନ୍ତି । ଜଣେ ଯେମିତି ଚୁପ୍‌ଚାପିଆ କଥାଭାଷା ହେଲାପରି ସେମାନେ ମୁହଁ ପାଖରେ ମୁହଁ ରଖି ପାକୁଳି ହାଣୁଥାନ୍ତି । ସେ ଗୁହାଳଧଡ଼ା ଖୋଲି ଗୋରୁ ଦିଟାଙ୍କ ଉପରେ କଅଁଳ ଟିପ ମାରେ । ଗୋରୁ ହେଲେ ମଧ୍ୟ ସେମାନଙ୍କର ବୋଧଜ୍ଞାନ ଅଛି । ସେମାନେ ହଠାତ୍ ମୁନିବକୁ ଚିହ୍ନି ପାରନ୍ତି । ଧଡ଼ପଡ଼ ହୋଇ ସେମାନେ ଶେଯ ଛାଡ଼ନ୍ତି । ଗୋଡ଼ ବେକ ଲମ୍ବେଇ ଅଳସ ଭାଙ୍ଗନ୍ତି । ତା'ପରେ ନବୀନା-ଠାରୁ ଇସାରା ପାଇ ପଦାକୁ ବାହାରନ୍ତି । ନବୀନା ଲଙ୍ଗଳଯୁଆଳି ପଦାକୁ ବୋହିଆଣେ । ଗୋରୁ ଦିଟା ପଦାରେ ମୁନିବକୁ ଯେମିତି ଅପେକ୍ଷା କରିଥାନ୍ତି—ନବୀନା ଯୁଆଳି ଦେଖାଇଲାକ୍ଷଣି ସେମାନେ ଦଉଡ଼ି ସୁଧାର ପିଲାପରି ବେକ ଦେଖେଇ ଦିଅନ୍ତି । ନବୀନା ସେମାନଙ୍କ ବେକରେ ଯୁଆଳି ବାନ୍ଧି ଦିଏ । ଆଉ ଯୁଆଳି ଉପରେ ଥୋଇଦିଏ ଲଙ୍ଗଳଟାକୁ । ତାପରେ ପାଞ୍ଚଣ ଚାଳି ନିର୍ଦ୍ଦେଶ ଦେଲେ ସେମାନେ ଚାଷ ଜାଗାକୁ ଚାଲନ୍ତି । ନବୀନା ସେମାନଙ୍କର ପଛ

ଥରେ । ବର୍ଷର ଅଧିକାଂଶ ଦିନ ଏଇ କାମ ଚାଲେ । ଯେଉଁ କେତୋଟା ଦିନରେ ବ୍ୟତିକ୍ରମ ଦେଖାଯାଏ ସେଗୁଡ଼ିକରେ ନବୀନା ଅନ୍ୟ କାମରେ ବାହାରିଯାଏ । ଗୋରୁ ଦିହେଁ ଟିକିଏ ବିଶ୍ରାମ ପାନ୍ତି । ନବୀନା କିନ୍ତୁ ତା ଜୀବନରେ ବିଶ୍ରାମ ନବାର କେହି କେବେ ଦେଖିନି । ଜର ବାଥେଙ୍କା କିମ୍ବା ଅନ୍ୟ କିଛି ଦିହ ଦୁଃଖ ସେ ତା ଜୀବନରେ କେବେ ଭୋଗିନି ।

ହାତଗଣତିକ ତିନି ବର୍ଷ ପୂରିଯାଇ ଅଧୁରି ପାଞ୍ଚ ମାସ କେତେଦିନ ହେଲା ମୁକ୍ତା ନବୀନା ଘରକୁ ଆସିଲଣି । ଆସିଲା-ଦିନୁ ସେ ଲକ୍ଷ୍ୟ କରିଛି ନବୀନାର ଏଇ ଗତି । ଏଇ ବନ୍ଧା—ଗତିର କିଛି ଅଦଳ ବଦଳ ନାହିଁ···କିଛି ତ୍ରୁଟି ନାହିଁ । ଦିନ କାମ ସାରି ନବୀନା ବେଳଗଡ଼ାନ୍ତିକି ଘରକୁ ଫେରେ । ଫେରିଲାବେଳେ ବାଟେ ଗୋହିରିମୁଣ୍ଡ ପୋଖରୀରେ ସେ ଗୋରୁ ଦିହେଁଙ୍କ ସାଙ୍ଗରେ ଗାଧୋଇଲା କାମ ବଢ଼େଇ ଦିଏ । ଘରେ ପହୁଞ୍ଚି ଓଦା ଲୁଗାରେ ଆଗ ଗୋରୁ ଦିହେଁଙ୍କୁ ପାଳ କୁଣ୍ଡା ଯୋଗାଡ଼ଦିଏ । ତାପରେ ଘରକୁ ଯାଇ ଲୁଗା ବଦଳେ । ଘରେ ବାସି ସଜ ଯାହାଥିବ ଦିଟା ବାଢ଼ି ଦେଲେ ତୁହିଁରେ ତାର ଖୁସି । ନୁଣ ତୁଣ ଖୋଜିବାର କିମ୍ବା ଭଲ ମନ୍ଦ ବାଛିବାର ନବୀନା ପାଟିରୁ କେହି କେବେ ଶୁଣିନି । ବରଂ ହାତପୂଆ ପାଣି ହାତରୁ ଶୁଖିବା ଆଗରୁ ସେ ଅନ୍ୟ କଡ଼ ଧନ୍ଦାରେ ପଦାକୁ ବାହାରି ଯାଏ । ତାପରେ ପୁଣି ସେଇ ସଞ୍ଜ···ନ ହେଲେ ନବୀନାର ଆଉ ଘରେ ଦେଖା ନାହିଁ ।

ନବୀନା ଏକଲା ମଣିଷ । ମୁକ୍ତା ତା ଘରେ ପାଦ ନ ଦେଉଣୁ ଘରର ସବୁ ବୋଝ ଭାର ମୁଣ୍ଡରେ ଲଦା ହୋଇଛି । ନବୀନା ଖୋଲା ମନରେ ଘର ସଁପି ଦେଇଛି ମୁକ୍ତା ହାତରେ । ମୁକ୍ତା

ମନ ଇଚ୍ଛା ଘର ଚଳେଇ ଚାଲିଛି । ଉଁ ଚୁଁ କରି ଟୋପାଟୋଏ ପାଟି କେବେ କେବେ ତାକୁ ଫିଟେଇନି । ବରଂ ମୁକ୍ତାର ସବୁ କାମରେ ନବୀନା ନୀରବ ସମର୍ଥନ ଜଣେଇଛି । ମୁକ୍ତା ବୁଝିଛି ନବୀନା ହାଡ଼ ଭାଙ୍ଗି ଖଟି ଯାହା କିଛି ଅର୍ଜନ କରିବ ସେ ବିନା ଆପତ୍ତିରେ ମୁକ୍ତାର ଜିମା କରିଦେବ । ସେତିକି ମୁକ୍ତାର ଇଚ୍ଛା । ସେ ଯେମିତିପାରି ସେମିତି ଘର ଚଳଉଥାଉ । ନବୀନା ଆଉ ଘର କଥାରେ ମୁଣ୍ଡ ପୂରେଇବ ନାହିଁ । ନବୀନାର ଏ ପ୍ରକାର ଇଚ୍ଛା ଉପରେ ମୁକ୍ତା କେବେ ପ୍ରତିବାଦ କରିନି । ବରଂ ଘରର କର୍ତ୍ତ୍ରୀ ହିସାବରେ ସେ ନବୀନାର ମନ ଜାଣି କାମ କରି ଚାଲିଛି ।

କିନ୍ତୁ···

ନବୀନା ଘରର ମାଲିକିଆଣୀ ହବାକୁ ମୁକ୍ତା ଅସ୍ଥି ନ ଥିଲା । ଘରର କୁଞ୍ଚି କାଠି କାନିରେ ବାନ୍ଧି କେବଳ ଘର ଚାଳିବା ମୁକ୍ତାର କାମ ନୁହେଁ । ସେ କାମ ନବୀନା ଯେ କୌଣସି ବିଶ୍ୱାସୀ ମଣିଷ ହାତରେ ଟେକେଇ ପାରିଥାନ୍ତା । ନବୀନା ମୁକ୍ତାକୁ ହାତ ଧରି ବାହା ହେଇଛି···ତା ପ୍ରତି ନବୀନାର କର୍ତ୍ତବ୍ୟ ଅଛି··· ଭିନ୍ନ କିସମର କର୍ତ୍ତବ୍ୟ । ନବୀନା ସେଥିରେ ହେଳା କରିଛି । ମୁକ୍ତା ତାର କୈଫିୟତ ଚାହୁଁନି ।

ମୁକ୍ତା ଦେଖେ ତା ପଡ଼ୋଶୀଘର ଚନ୍ଦର ମଲିକ ଘର କଥା । ଚନ୍ଦର କାଇମାଟିରେ କାମ କରେ । ବର୍ଷେ ଛ ମାସରେ ମାସେ ପନ୍ଦର ଦିନ ଛୁଟିନେଇ ଘରକୁ ଫେରେ ସେ । କି ଆନନ୍ଦରେ ସେ ଦିନଗୁଡ଼ିକ ସେବୀର କଟିଯାଏ । ସେବୀକି ଦିନ ଦି ପହର ଅଟେଣ୍ଟେନି । ସବୁବେଳେ ଚନ୍ଦର ପାଖରେ ବସି କଣ ହୁଁ ଚୁଁ ଠାପ ନଟେଇଥାଏ । ଏତିକି ନୁହେଁ, ମୁକ୍ତା ନଜର ରଖିଥାଏ ଯେ ପ୍ରାଣୀ ପନେଇ ରାତିଯାଏ

କଣ ଫୁଟନ୍ତ ଫୁଲର ହଉଥାନ୍ତି । ମନ୍ଦିରେ ମନ୍ଦିରର ପୁଣି କଣ ହୁଏ, ଯ ଜଣଙ୍କ ମନଇଚ୍ଛା ହସି ହସି ବେଦମ ହୋଇଯାନ୍ତି । ମୁକ୍ତାର ଅତ ପାଖଘର ସେମାନଙ୍କର···ସବୁକଥା ମୁକ୍ତା କାନରେ ଠକ୍ ଠକ୍ ହୋଇ ବାଜେ । ତା ଗୁଡ଼ ଭିତରଟା କଣ କେମିତି ହୋଇଯାଏ ଏଗୁଡ଼ାକ ଶୁଣିଲେ । ଭଗବାନ ଯଦ ତାକୁ ଚନ୍ଦର ରକମର ଗିରସ୍ତଟିଏ ଦେଇଥାନ୍ତେ ! କିଛି ନ ହେଉ ଦପଦ ମିଠା କଥା ମରଦ ମୁହଁରୁ ଶୁଣିଲେ ତା ଆତ୍ମା କେତେ ଶାନ୍ତି ପାଉଥାନ୍ତା···

ବର୍ଷକରେ ପନ୍ଦରଟା ଦିନ ହେଉ ପଛକେ ସେଇ କେତେ ମନ ସରାଗରେ ତା ଗିରସ୍ତ ସାଙ୍ଗରେ ଦିନ କାଟେ । ସେ କିନ୍ତୁ ବରଷସାରା ଗିରସ୍ତ ମୁହଁ ଚାହିଁ ବସିଛି, କେବେ ଦିନଟାଏ ନବୀନା ତାକୁ ମନଫୁଲାଣିଆ କଥା ପଦେ କହିନି । ହସ ଖୁସି ଥଟ୍ଟା ପରିହାସତ ଦୂରର କଥା । ସବୁବେଳେ ଯେମିତି କାମର ଗୁଣ୍ଡୁ ଗୁପାଣିତରେ ନବୀନା ବୁଡ଼ିରହେ, ଆଉ ବୁଡ଼େଇ ରଖିବାକୁ ଚାହେଁ ମୁକ୍ତାକୁ । କେବଳ କାମ କରି ଖାଇଲେ ପିଇଲେ କଣ ମଣିଷ ସୁଖରେ ଦିନ ଯାଏଁନି ।

ମୁକ୍ତାର ମନକଥା ମନ ତଳେ ତଳେ ଖେଳି ବୁଲୁଥାଏ । ଦିନକ ପାଇଁ ସେ ଏ କଥା ନବୀନା କାନ କରିନି । ଦିନ କିନ୍ତୁ ଗଡ଼ି ଚାଲିଛି । ଯ୍ୱାର ଭିତରେ ମୁକ୍ତା କୋଳକୁ ପିଲାଖଣ୍ଡେ ଆସିଥିଲା । ବର୍ଷକ ପରେ ତା କୋଳ ଖାଲିକରି ସେ ଚାଲିଯାଇଛି । ତଥାପି ନବୀନା ମନରେ ଭାବାନ୍ତର ଆସିନି । ମୁକ୍ତାର ଏ ଦୁଃଖ ଦିନରେ ମନ ପୂରିଲାପରି କଥା ପଦେ ନବୀନା ତାକୁ କହିନି, ପିଲାଟି ଥିଲା-ବେଳେ ସାଇପଡ଼ିଶାଏ ତାକୁ କୋଳରେ କାଖରେ ପୂରେଇ କେତେ ଟେକିଲେ, କେତେ ଆଦର କରନ୍ତି । ଜନ୍ମକଲା ବାପ ହୋଇ ନବୀନା

କିନ୍ତୁ ତା କରନ୍ତି । ଯେମିତି ଏ ନବାଗତର ସୁଖ ଦୁଃଖ ସାଙ୍ଗରେ ସେ ବିଲକୁଲ ଅସଂପୃକ୍ତ·· ମୁକୁତାକୁ ଯେଉଁଗୁଡ଼ାକ ବଡ଼ ବାଧେ । ବେଳ ଦେଖି କାନ୍ତୁ ବାଡ଼କୁ ଦେଖେଇ ମୁକୁତା ପିଲ ଉପରେ ମନ୍ତବ୍ୟ ଦିଏ । ନବୀନା ଶୁଣି ନ ଶୁଣିଲପରି ତା ବାଟରେ ଚାଲିଯାଏ । ନେଇଟାଣି ଆଉ ପଦେ କହିବାକୁ ମୁକୁତା ସାହସ କରେନି । କେବଳ ଘର କଣରେ ମୁହଁ ଲୁଚେଇ ଯାହା ଆଖିପତା ଓଦାଳିଆ କରେ । ପିଲାତ ସହଜରେ ଚାଲିଯାଇଚି ଆଜି ।

ପିଲାଟା ସିନା ଚାଲିଯାଇଚି, ଉମରତ ଖସି ଯାଇନି, ପାଖରେ ଜବାନ ଗିରସ୍ତ । କିଏ ଜାଣେ କାଲିକି କାଲି ନୂଆ ପିଲ ମୁକୁତାର କୋଳ ମଣ୍ଡି ଉଠିବ । ତଥାପି ମୁକୁତା ମନରେ ଅସୁମାରି ଦୁଃଖ ତା ଛାତି ତଳେ ଅବଶୋଷ ଜମାଟ୍ ବାନ୍ଧିଚି, ହିମାଳୟର ବରଫ ଗଦା ପରି । ମନର ଏ ଅବଶୋଷ ଘୁଞ୍ଚେଇବାକୁ ସେ କେବେ ନିଜେ ଚେଷ୍ଟା କରନି । କିମ୍ବା ନବୀନା କଉ ଦିନ ଚାହିଁନି ତା ମନତଳ ବୁଝିବାକୁ । ଦୁନିଆ ତା ବାଟରେ ଆଗେଇ ଚାଲିଛି । ତିନିବର୍ଷ ପୂରି କେତେ ଗୁଡ଼ାଏ ଦିନ ଆଗେଇ ଗଲଣି ।

ଅଶୀଣର ତୋଫା ଜହ୍ନରାତି । ଦ୍ୱାଦଶୀ ଚାନ୍ଦ ଘର ମଥାନ ଉପରେ ଢଳି ଚାନ୍ଦନୀର ନହଡ଼ ଭାଙ୍ଗୁଚି । ହିମାକ୍ତ ପୃଥିବୀ ସ୍ୱପ୍ନାବିଷ୍ଟ । ଚାନ୍ଦନୀ ପରଦା ଅନ୍ତରାଳରୁ ଅବଶୃଙ୍ଖଳ ତରୀଗୁଡ଼ାକ ନିଷ୍ପ୍ରଭ ଦେଖା-ଯାଉଚନ୍ତି । ଦୂର ଦିଗ୍‌ବଳୟର ପାଣ୍ଡୁର ଉପାନ୍ତରେ ତନ୍ଦ୍ରାକ୍ଳିଷ୍ଟ କୁହେଳିକା । ଉନ୍ମନ୍ତ ପଲ୍ଲୀ କାମନାଜର୍ଜରିତ ପ୍ରାନ୍ତରେ ନୀରବ ମହାଶୂନ୍ୟ ଅଡ଼କି ଚାହିଁ ରହିଚି । ମୁକୁତା କାମ ତୁଟେଇ ନବୀନା ପାଦ ପାଖରେ ବସିପଡ଼ିଲା ।

ନବୀନା ଢେଢେବେଳୁ ନିଦରେ ଶୋଇଗଲଣି । ଧନମାନର ଗଅଣ୍ଟେଣି ପରେ ଭୁଇଁ ଶୁଙ୍ଘିଲେ ନବୀନା ଅଚେତ ହୋଇପଡ଼େ । ମୁକୁତା ଘରକାମ ସାରି ତା ପାଖରେ ପଡ଼ିଥିଲା ବେଳକୁ ସେ ଘୁଙ୍ଗୁଡ଼ି ମାରୁଥାଏ ବଡ଼ ଯୋରରେ । ମୁକୁତାର ବେଳେ ବେଳେ ଇଚ୍ଛା ହୁଏ ସେ ହାତ ମାରି ନବୀନାକୁ ଉଠେଇ ଦିଅନ୍ତା । ନବୀନା ନିଦ ଭାଙ୍ଗିଲେ ଦିକ୍ଷଣ ମନଇଚ୍ଛା ଦିପଦ ସୁଖଦୁଃଖ ହୁଅନ୍ତେ । ସେ ପୁଣି ଭାବେ - କାଳେ କଣ ମନେ କରିବ ନବୀନା । ସେ ହୁଏତ ଭାବିପାରେ ସାରାଦିନ ଖଟି ଖଟି ଫେରିଲାପରେ ବି ମଣିଷକୁ ନିସ୍ତାର ନାହିଁ । ତାକୁ ଟିକିଏ ଶାନ୍ତିରେ ନିଶ୍ୱାସ ମାରିବାକୁ ଦବା ମୁକୁତାର ଇଚ୍ଛା ନୁହେଁ । ତା କଥା ନିଦଟାକୁ ଭାଙ୍ଗି ମୁକୁତା ତାକୁ ଅପଦସ୍ତ କରୁଛି । ମୁକୁତାର ମନର ସରାଗ ମନତଳେ ମରିଯାଏ । ନବୀନାର ନିଦ ଭାଙ୍ଗିବାକୁ ତା ସତ ବଳେନି, ଅଜବ ସେଇକଥା । ନବୀନା ନିଦ ଯୋରରେ ଘୁଙ୍ଗୁଡ଼ି ମାରୁଛି । ପୁରାପୁରି ଅଚେତ ହୋଇ ପଡ଼ିଛି ସେ । କାହିଁକି ମୁକୁତା ତା ନିଦ ଖରାପ କରିବ ମିଛରେ । ସବୁଦିନପରି ସେ ନବୀନାର ଗୋଡ଼ତଳେ ବସି-ଗଲା । ତାପରେ ସେ ନବୀନା ଗୋଡ଼ରେ ହାତ ବୁଲେଇବାକୁ ଲାଗିଲା । ଟିକିଏ ଜୋରରେ ଟିପ ମାରିଲେ ନବୀନାର ନିଦ ଭାଙ୍ଗିଯିବ । ସେଥିଲାଗି ବଡ଼ ହୁସିଆର ହୋଇ ସେ ଗୋଡ଼ ଚପୁଥାଏ । ମଝିରେ ନିଦବାଉଳା ନବୀନା କେବଳ ଅସଂଯତ ହାତଗୋଡ଼ ଖେଳାଉଥାଏ ଥରେ ଥରେ ।

•

ହଠାତ୍ ମୁକୁତା କାନରେ ବାଜିଲା ମଣିଷ ଗଳାର ଚୁପା ଆବେଦନମୟ । ସେ ଉଦ୍‌ଗ୍ରୀବ ହୋଇ ଉଠିଲା ସେଇ ଅସ୍ପଷ୍ଟ ସ୍ୱର ଭିତରୁ କିଛି ଠଉରେଇ ନବାକୁ । କିଛି ଶୁଣାଗଲାନି । ତଥାପି

ମୁକୁତା ବୁଝିପାରିଲା ଚନ୍ଦର ଘରୁ ଏ କଥାର ସୂଅର ଉଠୁଚି । ସେ କେତେ ଧନ ଲୁଟିନେଇ ଅଜ ଘରକୁ ଆସିଚି । ମୁକୁତାର ଛାତିତଳ ଗୋଟାଏ ଅକୁହା ବେଦନାରେ କୁହୁଳି ଉଠିଲା । କେଜାଣି କାହିଁକି ତାକୁ ଲାଗିଲା ଯେମିତି ତା ଜୀବନ-ବୀଣା ବେସୁର ଧରିଯାଇଚି । ଅଜ ସେବା ଜୀବନରେ ଅଶାର ଅଶାବରି ଛନ୍ଦ ତୋଳିଚି । ସେବା ଭାଗ୍ୟବତୀ । ପାଞ୍ଚ ଦଶଦିନ ହେଉ ପଛକେ ସେ ଜୀବନର ଦାମ ବୁଝୁଚି । ଜୀବନକୁ ଜୀବନଭାବରେ ଉପଭୋଗ କରିବାର ସୁଆଦ ପାଉଚି । ଚନ୍ଦର···ମନ ଚିହ୍ନିବାର ଗରଜ ଏକା ।

କଥାର ଗୁଡ଼ା ଢେଉ ଉଚ୍ଛ୍ୱସିତ ହସର ତରଙ୍ଗ ତୋଳିଥିଲା ଯୁଗ୍ମ ଭିତରେ । ସେ ହସରେ ନ ଥିଲା ବାଧା, ନ ଥିଲା ବନ୍ଧନ । ଉଦ୍ଦାମ ହସର ଆବେଗ ମୁକୁତା ମନରେ ଦାଗ କାଟି ନୈଶ ଆକାଶ ବୁକୁରେ ମିଶିଯାଉଥିଲା । ଶୁକ୍ଳ ଚନ୍ଦ୍ରମାର ପାଣ୍ଡୁର ଜୋଛଣା ଭିତରେ ଦୁଇଟା ଦରଦୀ ପ୍ରାଣର ଉଷ୍ମ ଭାବାବେଗ ଯେମିତି ମାୟାପୁରୀର ଭ୍ରମ ସଜାଡ଼ି ଯାଉଥିଲା । ଅସହଣୀ ହୋଇ ଉଠିଲା ମୁକୁତା, ତାର ଛାତି-ତଳ ହାହାକାର କରି ଉଠିଲା । ନବୀନାର ପାଖେ ପାଖେ ମୁକୁତା ଜନଗିଡ଼ ଠାକି ବସିଚି । ତା କପାଳରେ ଏ ସୌଭାଗ୍ୟରୁ କଣିକାଏ ଜୁଟିନି । ନବୀନା ତାକୁ ସବୁ ଦେଇଚି, କିନ୍ତୁ ତା ଛାତିତଳର ଡାକର ଶୁଣିନି । ମୁକୁତାର ଭାତ ମୁଠାକରେ ଲୁଗା ଖଣ୍ଡକରେ ଅଭାବ ନାହିଁ । କୋଳରେ ବି ଚନ୍ଦରଉଦଆ ପୁଅ ପାଇଥିଲା ସେ । ତଥାପି, ତଥାପି ତାର ଅଭାବ ପୂରଣ ହେଇନି । ମୁକୁତା ମନକୁ ମନ ଏଇ ପ୍ରଶ୍ନ ବହୁବାର ପଚାରିଚି···ତାର ଉତ୍ତର ପାଇନି । ଉତ୍ତର ବଦଳରେ ତା ଛାତିଭିତରେ ମାତ୍ର ଉଠିଚି ଗୋଟାଏ ଘାଅ···ଅଶୁଖା । ଯେଉଁଟା ଅନ୍ୟ କେହି ଦେଖିବାର ଉପାୟ ନାହିଁ···ଭଲକରିବାର ଔଷଧ ନାହିଁ । ସେ ମୁକୁତାକୁ ମରଣାନ୍ତକ ଦୁଃଖ ଦେଇ ଚାଲିଚି ।

ମୁକ୍ତା ଆଉ କିଛି ଭାବିପାରିଲାନି । ଦ୍ୱାଦଶୀ ଜହ୍ନର ଝଲକାଏ ଦୁଧ କାକର ଜ୍ୟୋତ୍ସ୍ନା ଯେମିତି ତା ଆଖିରେ ନିଆଁ ଫୁଲ ଫୁଟେଇ ଦେଲା । ଅଜାଣତରେ ମୁକ୍ତାର ଆଖି ତା ଲୁହେଁ ଲୁହେଁ ବୁଜି ହୋଇ ଗଲା । ନବୀନାର ଗୋଡ଼ ଉପରେ ବୁଲିଲାହାତ ଆପେ ଆପେ ଅଟକି ଗଲା । ଯୃବ ଭିତରେ ମୁକ୍ତାର ହାତ କେତେବେଳେ ଅସ୍ୱାଭାବିକ ରୀତିରେ ଚଂଚଳ ହୋଇଯାଇଥିଲା । ସେ କଥା ମୁକ୍ତା ନିଜେ ଜାଣି-ପାରି ନଥିଲା । କିନ୍ତୁ ହାତର ଶକ୍ତ ଚିପାଭିତରେ ନବୀନାର ନିଦ ଭାଙ୍ଗି ଯାଇଥିଲା । ନବୀନା ମୁକ୍ତାକୁ ମୁହଁ ଖୋଲି କିଛି କହି ନ ଥିଲା । ସେ ଲକ୍ଷକରୁଥିଲା ଏଇ ଅସ୍ୱାଭାବିକତାର ହେତୁ । ନବୀନା ଜାଣେ ତା ଗୋଡ଼ରେ ହାତ ନ ମାଇଲେ ମୁକ୍ତା ବିଛଣାକୁ ଯାଏନି । ତା ବାରଣ ନ ଶୁଣି ମୁକ୍ତା ସବୁଦିନେ ଏଇକାମ କରିଚାଲିଚି । ଅଧିକାଂଶ ଦିନ ନିଦ ଜୋରରେ ନବୀନା ମୁକ୍ତାର ଏ କାମ ଜାଣି-ପାରିନି । ତେବେ ଜାଗିଥିଲା ଦିନରେ ସେ ମୁକ୍ତାକୁ ବାରଣ କରିଚି···ମୁକ୍ତା କଥା ନ ମାନି ତା ଗୋଡ଼ରେ ହାତ ବୁଲେଇ ଚାଲେ···କିନ୍ତୁ ଆଜି ?

ତା ପରେ ମୁହୂର୍ତ୍ତଟାଏ ଗଡ଼ିଯାଇଛି ।

ନବୀନାର ପାଦ ଉପରେ ଝରିପଡ଼ିଲା ଦୁଇଟୋପା ଉଷ୍ମ ଲୁହ । ନବୀନା ଚମକି ପଡ଼ିଲା । ମୁକ୍ତାର ରୁଦ୍ଧ ଆବେଗ ଯେମିତି ବାରଣ ନ ମାନି ସ୍ରୋତ ପ୍ରଗତିରେ ପଦାକୁ ବାହାରି ଆସୁଥିଲା । ନବୀନା ନିମିଷକ ପାଇଁ ସ୍ଥିର ହୋଇଗଲା । ରାତି···ନୀରବତା···ନିସ୍ତବ୍ଧ ଚାରିଆଡ଼ । ମୁକ୍ତା ନବୀନାର ପାଦପାଖରେ ବସି କାନ୍ଦୁଚି । ନବୀନା ହୁଏତ ତାର ଅଦଅନ୍ତ ଜାଣେନି । ସେ ହଠାତ୍ ମୁକ୍ତାର ହାତ-ମୁଠା ଭିତରୁ ଗୋଡ଼ ଖସେଇ ନେଇ ଉଠି ବସିଲା ।

ଅତି ସନ୍ତର୍ପଣରେ ନବୀନ ଡାକିଲା—ମୁକୁତା !

ଉତ୍ତର ଆସିଲାନି ।

ନବୀନା ଆଉ ଟିକିଏ ଅବେଗ ବଢ଼ାଇ ପୁଣି ଡାକିଲା—ମୁକୁତା !!

ଉଁ—ଏଥର ଜବାବ ଆସିଲା ।

ତୁ କାନ୍ଦୁଚୁ ମୁକୁତା ?

ନାହିଁ ତ, କାନ୍ଦିବି କାହିଁକି ?

ତା ହେଲେ—

ନବୀନାକୁ ଆଉ କିଛି କହିବାକୁ ମୁକୁତା ସୁଯୋଗ ଦେଲାନି । ସେ ଜାଣିଲା ନବୀନା ଚେତା ଥିଲା । ତା ଆଖିର ଲୁହ ନବୀନା ପାଦ ଉପରେ ପଡ଼ିବାର ସେ ଜାଣିପାରିଚି । କଥାକୁ ଭଲେ ବାଟରେ ବାଗେଇ ଦବାକୁ ସେ ପଡ଼ିଆସ୍ତ୍ର ବାନ୍ଧିଲା । ବଡ଼ କଅଁଳ ତୁଣ୍ଡରେ କଥାକୁ ନାକଭିତରେ ପୁରେଇ ସେ କହିବାକୁ ଲାଗିଲା—ନାହିଁ, ଆଖିରେ କଣ ଗୋଟାଏ ପଡ଼ିଗଲା ଯେ— ।

ନବୀନା ଲମ୍ପଟ ଓଲା ନୁହେଁ । ସେ ବୁଝିଲା ଘଟଣା ସମାଳିବାକୁ ମୁକୁତାର ଏଇଟା ମନଗଢ଼ା ଫନ୍ଦି । ସେ ଅତି ଅଧୀର ଏବଂ ଅସହାୟ କଣ୍ଠରେ ପଚାରିଲା—ମୋ ଦିହ ଛୁଇଁ କହିବୁ ମୁକୁତା, ତୁ ମୋତେ ମିଛ କହୁନୁ ?

ଅଡ଼ୁଆରେ ପଡ଼ିଲା ମୁକୁତା ଏଥର । ନବୀନାର ଦିହ ଛୁଇଁ ସେ କେବେ ହେଲେ ମିଛ କହିନି । ଆଜ ପୁଣି ଦିହ ଛୁଇଁ କମିତି ମିଛ କହିବ ସେ । ସେ ବଡ଼ ଧୀର ଆଉ ଚେଲ୍ଲାଳିଆ ଗଳାରେ କହିଲା ଛି, ସ୍ୱାମୀଆରେ ସେ ଅଲକ୍ଷଣା କଥା କାହିଁକି ତୁଣ୍ଡରେ ଆସୁଚ ଭଲା !

ନା ମୁକୁତା, ତୋତେ ମୋ ରାଣ ଲୋ···କଥାଟା ମୋତେ ଫିଟେଇ କହ—ଉଦ୍‌ବେଳିତ ନବୀନାର ମନ ବଡ଼ ଉତ୍ସୁକ ହୋଇ ପଡ଼ିଥିଲା ।

କଥା ଛପେଇବାକୁ ମୁକୁତାର ଆଉ ରାହା ନ ଥିଲା । ନବୀନାର ମୁହଁକୁ ତା ଡାହାଣ ହାତରେ ବୁଜ ଧରୁ ଧରୁ ସେ ନବୀନା ଅଙ୍କ ଆଉଜ ଆସିଥିଲା । ନବୀନାର ଛାତି ଭିତରେ ମୁହଁ ଜାକି ସେ କହିଲା ରାଣ ନିଯ୍ୟମ କାହିଁକି ପକାଉଚ କହିଲ ?

ନବୀନାର କିନ୍ତୁ ଏକା ଜିଦ୍‌ । ସେ ଜାଣେ ମୁକୁତା ତାକୁ କଥା ଛପଉଚି । ଆଉ ଚେଷ୍ଟା କରୁଚି ତାକୁ ଭୁଲେଇ ଦବାକୁ । ସେ ତ ଆଉ କଅଁଳା ପିଲା ନୁହେଁ । ମୁକୁତା କଥା ବାଆଁରେଇ ତାକୁ ବୋଧ କରିବ କେତେବେଳେ । କହୁଣ ମନଭିତରୁ ତାର କଥାଟ୍ ଉଠିଲା—ସତ କହ ମୋତେ ମୁକୁତା !

ମୁକୁତା ଆଉ ସମ୍ଭାଳି ପାରିଲାନି । ସେ ଅତି ଅସ୍ପଷ୍ଟ କଣ୍ଠରେ ନବୀନାର ଛାତି ଭିତରୁ କହିଲା—ଦେଖିଲ·········।

ବାସ୍‌, ଆଉ କିଛି ନାହିଁ ।

ନବୀନା କାନ ଡେରି ଶୁଣିଲା—ଚନ୍ଦର ଘରୁ ଭାସି ଆସୁଚି ହସର ଦୁଆର । ଚନ୍ଦର ଆଜି ଢାଇସାହିରୁ ଫେରିଚି । ସଞ୍ଜବେଳେ ତାକୁ ପୁହାର ବେଭାର ହଉଥିଲା । ସେ ବୁଝିଲା ମୁକୁତା ଛାତିତଳର ପରସ୍ପ । ଦୁଇହାତ ତାର ମୁକୁତା ଉପରେ ଆପେ ଆପେ ବୁଲିଗଲା । ଶକ୍ତ ବାହୁର ଗୁପାଭିତରେ ମୁକୁତାକୁ ନିଜ ଦେହରେ ମିଶେଇ ଦବାକୁ ନବୀନାର ଇଚ୍ଛା ହେଲା । ସେ ଥରିଲା ଥରିଲା କଣ୍ଠରେ ଆରମ୍ଭ କଲା- ମୁକୁତା, ଶୁଣିଥିଲା ମେଘଚନ୍ଦ୍ର ସୁନ୍ଦରମଣି ଖୋଜିଲେ ସହଜରେ ଆଖିରେ ପଡ଼େନା ଲୋ । ମୁଁ ଉଦାସିଆ ମଣିଷ । ଚାକ୍‌ଟଣ ସତ ମିଛ

କହୁ କାହାର ମନ ଭୁଲେଇବାକୁ କେବେ ଚାହୁଁନ । ଭାବଥିଲା ଘର-ମଣିଷ ମୁକୁତା । ସେ ମୋତେ ବୁଝିବ । କିନ୍ତୁ···

ନବୀନାର ସ୍ୱର ଠିକଣ ପାଇଁ ଅଟକି ଗଲା । ତାର ବନ୍ଧ ହାତ ଭିତରୁ ମୁକୁତା ଯେମିତି କଣ ସପନ ଦେଖୁଥିଲା ।

ନବୀନା ପୁଣି ଆରମ୍ଭ କଲା—

ଚନ୍ଦନ୍ ହଉ, ମୁଁ ହୁଏ ମଣିଷ ଅଟେ । ମଣିଷର ମନ ମଣିଷ କଳିବା ସମ୍ଭବପର ହୋଇ ପାରେନା । ଚନ୍ଦନ୍ କାହାକୁ ସୁଖ ପାଏ ସେକଥା ସେବା ଜାଣେନା । କିନ୍ତୁ ମୁଁ କାହାକୁ ସୁଖ ପାଏ ସେଇଟା ତୁ ଅନ୍ତତଃ ଜାଣିଥିବୁ ବୋଲି ମୁଁ ବଡ଼ ଆଶା କରିଥିଲି –ସେଇଟା ମୋର ଭୁଲ୍ ଭାବନା । ଯେତେ ହେଲେ ତୁ ବି ମଣିଷ ତ !

ଆଉ ଏମିତି ନ ଗପିବାକୁ ମୁକୁତା ବାରଣ କଲା । ନବୀନା ତା କଥା ଶୁଣିଲା ନା···ଶୁଣି ପାରିଲା ନା । ତା ଅନ୍ତରରୁ ଝରି ଆସୁ-ଥିଲା ଗୋଟାଏ ଅବାରିତ ପ୍ରବାହ,ସେ ପୂର୍ବଗତିରେ କହୁ ଚାଲିଥିଲା—ସେବା ଆଉ ଚନ୍ଦନ୍ ହସ ଦେଖି ଆଜି ତୋ ଆଖିରେ ଯେତିକି ଲୁହ ତୋ ନିଜ ପାଇଁ ଜମା ହେଇଛି, କାଲିକି ସେବାର ଦୁଃଖ ଦେଖିଲେ ସେବା ପାଇଁ ତୁ ସେତିକି ଲୁହ ଝରେଇବୁ । ତୁ ଜାଣିନୁ, ସେବା ଜାଣିନା, ଚନ୍ଦନ୍ ଆଉ ଗୋଟାଏ କାହାକୁ ଧରି କାଇମାଟିରେ ତା ଡେରା ବାନ୍ଧିଛି ବୋଲି । ଯେଉଁଦିନ ସେବା ଏକଥା ଶୁଣିବ, ତା ଆଖିର ଲୁହଧାର ଆଉ ବନ୍ଦ କରିହେବ ନା । ସେଦିନ ସେବା ବୁଝିବ ଚନ୍ଦନ୍ ତାକୁ ଅଗ୍ନି ଠକେଇ ଆଗେଇଛି । ମୁଁ ବି ନିଜେ ଭଲ ନୁହ ମୁକୁତା, ତୋର ଏ ଘରକୁ ଗୋଡ଼ ଦବା ଆଗରୁ ମୁ ବି ବାଛି ନେଇଛି ମୋର ଯାହା ଅତି ଆପଣାର । ମୁଁ ଭାବିଥିଲି ମୋ ନିଜ

ମଣିଷ ହିସାବରେ ତୁ ସେଗୁଡ଼ିକୁ ଯୁଗ ପାଇବୁ । ସେଇ କଥା ମୁଁ ସବୁବେଳେ ଗୌରବରେ ଲକ୍ଷ୍ୟ କରେ । କିନ୍ତୁ ଦେଖୁଛି ତୁ ଅସହଣୀ ହୋଇ ଉଠିଛୁ ।

ନବୀନା ଏଇମିତି ବକି ଚାଲିଥାଏ ।

କେଉଁଠି ଯିବାର ଶେଷ ହେବ ମୁକୁତା ସେଇ କଥା ଭାବୁଥିଲା । ଘଡ଼ିକ ଆଗରୁ ଚାଲିଯାଇ ନବୀନା ଅଞ୍ଚଳରେ ତା ଛାତିତଳୁ କେତେବେଳୁ ନିଭିଗଲାଣି ସେ ଜାଣେନି । ତା ମନକୁ ଖାଲି ଗୁହିଁ ଗୁହିଁ ଲାଗୁଥିଲା—ଚନ୍ଦଣର ବାଇମାଛି ଘରେ କିଏ ଗୋଟାଏ ଅଚିହ୍ନା ମଣିଷ ସାଙ୍ଗରେ ଚନ୍ଦର ବଡ଼ ଯୋରରେ ହସଖୁସି ଲଗେଇଛି । ସେମାନଙ୍କ ସେମାନଙ୍କ ଆଗରେ ବଡ଼ ସ୍ଥାନମାନ ହୋଇ ଠିଆ ହୋଇଛି ତା ଆଖିରୁ ବାହାରି ଯାଉଛି ଧାର ଧାର ଲୁହ । ସେ ଅସ୍ଥିର ହୋଇ ଉଠିଲା ।

ନବୀନା ମୁକୁତାକୁ ଅଧୁର ଓଠରେ ଗୁପିଧରି କହିଲା—ତୁ ଦିନା ତିନୋଟା ବର୍ଷ ହେଲା ଏ ଘରକୁ ଆସିଛୁ । ତା ଆଗରୁ ତ ପୁଣି ମୁଁ ଏଇଠି ଥିଲି । ସେତେବେଳେ ତ ମୋର ସାଙ୍ଗଚୁଖ ଭଲମନ୍ଦ ସବୁ କିଛି ଥିଲା । ମୋର ସେଇଦିନର ଦହଲଗା ସାଙ୍ଗ ଏଇଦିହା ବଳଦ, ନଙ୍ଗଳ, ଧୁଅଳି, ପାଞ୍ଚଣ ଅଉ ଜୀବନ ରଖିଲା ଏଇ ଦଗ୍ଧିବ-ମାଣ ଗୃଷଜମି—ଏମାନଙ୍କ ପ୍ରତି ମୋ ଛାତିର ଦରଦ କଣ ମୁଁ କେବେ କମେଇ ଦେଇପାରେ ? ତା ପରେ ଦିନା ତୁ ମୋ ଘରକୁ ଆସିଛୁ । ଅସ୍ଥ କହିଲି ମୁକୁତା, ତୋ ହକ୍ ଦାବି ଉପରେ ମୁଁ କଣ କେବେ ଉଣା କରୁଛି ?

ନବୀନାର କଣ୍ଠନଳି ସେତେବେଳକୁ ଦୁର୍ବଳ ଧରି ଆସୁଥିଲା । ତା ଛାତିତଳର ଅମାନିଆ ଆବେଗ କଥାକଥା ଭିତରେ ଦୋକୁ

ଅସିବାକୁ ସାହା ପାଉ ନ ଥିଲା—ମସ୍ତିଷ୍କ ତାର ଭାରାକ୍ରାନ୍ତ ହୋଇ ଯାଉଥିଲା । ଆଉ ସେ ଭାରୀ ଠିକଏ ଲାଘବ ହେବାକୁ ନବୀନା ମୁକୁତାର ମୁଣ୍ଡ ଉପରେ ତା ମୁଣ୍ଡ ରଖିବାକୁ ଆଶ୍ରୟ ଖୋଜୁଥିଲା ଯେମିତି । ନବୀନାର ସାରା ଦେହରେ ଖେଳି ବୁଲୁଥିଲା ଗୋଟାଏ ଦୁର୍ଦ୍ଦମନୀୟ ଶିହରଣ ।

ମୁକୁତା ନିଜର ଭୁଲ ବୁଝିଲା, ଆଉ ବୁଝିଲା ନବୀନାର ମନ । କିନ୍ତୁ ବହୁତ ଡେରି ହୋଇ ଯାଇଥିଲା । ହଠାତ୍ ସେ ଅନୁଭବ କଲା ନବୀନା ଆଖିର ଦୁଇଟୋପା ଉଷୁମ ଲୁହ ତାର ଗଣ୍ଡ ଉପରକୁ ଝରି ପଡ଼ିଲା । ନବୀନାର ବାହୁବନ୍ଧନ ଭିତରୁ ନିଜକୁ ନ ମୁକୁଳାଇ ସେ ଯୋର୍‌ରେ ତାକୁ ଯାବୁଡ଼ି ଧରିଲା କେବଳ । ଆଉ ଅଭିଯୋଗ ମିଶା ଗଳାରେ କହିଲା—ମୋ ଧନ, ତମେ କାହିଁକି କାନ୍ଦୁଚ କହିଲ ?

କିଛି ଉତ୍ତର ନାହିଁ ।

ବାହାରେ ସେତେବେଳେ ଦ୍ୱାଦଶୀ ଚନ୍ଦ୍ରର ଜ୍ୟୋତ୍ସ୍ନା ସ୍ୱପ୍ନର କୁହୁଜାଲ ବୁଣୁଥିଲା, ମାତ୍ର ତା’ଠୁ ବଳି କୁହୁକ ଅଛି ମୁକୁତାର ଘର ଭିତରେ···।



## ଶଶି ପଟ୍ଟନାୟକ

ଜନ୍ମ ୧୯୨୬ରେ, ହିନ୍ଦୋଳର ହୁଡୁଙ୍ଗକୋଟ ଗ୍ରାମରେ, ୧୯୫୦ରେ ସେ ଓଡ଼ିଆରେ ଏମ୍. ଏ. ପାଶ୍ କରିଛନ୍ତି । ଅଳ୍ପଦିନ କ୍ରାଏଷ୍ଟ ( ସେତେବେଳେ ଖ୍ରୀଷ୍ଟିୟାନ୍ ) କଲେଜରେ ଅଧ୍ୟାପକ ଥିଲେ । ବର୍ତ୍ତମାନ ଓଡ଼ିଶା ସରକାରଙ୍କ ଦେବୋତ୍ତର ବିଭାଗରେ ଅବସ୍ଥାପିତ ।

ସେ କବିତା ଲେଖିଛନ୍ତି, ନାଟକ ମଧ୍ୟ ମାତ୍ର ସାହିତ୍ୟର କଥା ଶିଳ୍ପ ପ୍ରତି ତାଙ୍କର ଅନୁରକ୍ତି ବେଶୀ, ତାଙ୍କର ଲେଖନୀ ବର୍ତ୍ତମାନ ଗଳ୍ପଶିଳ୍ପରେ ଆସକ୍ତ । ତାଙ୍କର କ୍ଷୁଦ୍ର ଗଳ୍ପ ଝଙ୍କାର, ଉତ୍କଳ ସାହିତ୍ୟ, ଚନ୍ଦ୍ରଲେଖା, ଆସନ୍ତା କାଲି, ସମାବେଶ ଓ ପ୍ରଜାତନ୍ତ୍ର ପ୍ରଭୃତି ପତ୍ର ପତ୍ରିକାରେ ପ୍ରକାଶିତ । ମୌଳିକ ରଚନା ଛଡ଼ା ସେ ଗଳ୍ପାନୁବାଦରେ ସାଫଲ୍ୟ ଲାଭ କରିଛନ୍ତି । ଆନ୍ତର୍ଜାତିକ କଥାଶିଳ୍ପୀ ଏରସକ.ଇନ୍ କଲଡ୍‌ୱେଲ୍‌ଙ୍କ କେତେକ ଗଳ୍ପର ଅନୁବାଦ ଆମ ସାହିତ୍ୟରେ ତାଙ୍କର ଏକ ଅବଦାନ ।

ତାଙ୍କର ଶିଳ୍ପ ମାନସ, ସଚେତନ, ସବୁଜ, କାରୁଣ୍ୟପୂର୍ଣ୍ଣ ଠିକ୍ ତାଙ୍କ କଲସ୍ଥାନର ଶ୍ୟାମ-ଶ୍ରୀ କାହାଣୀ ପରି ।